ଭକ୍ତକବି ଶ୍ରୀ କବିସୂର୍ଯ୍ୟବ୍ରହ୍ମାଙ୍କ ବିରଚିତ

# ନିଷ୍ଣୁନୀଳମଣି

ଶ୍ରୀରାଧାକୃଷ୍ଣ ବସୁ ଏମ୍, ଏଙ୍କ

ଦ୍ୱାରା

ସଂଶୋଧିତ ଓ ପ୍ରକାଶିତ ।



ପ୍ରଥମ ସଂସ୍କରଣ ।

— Union Printing Works,
rinted by J. Pradhan,
CUTTACK.
1920.

ମୂଲ୍ୟ [illegible] ମାତ୍ର ।

ଉତ୍କଳର ଶ୍ରୀ କବିସୂର୍ଯ୍ୟବ୍ରହ୍ମାଙ୍କ ପ୍ରଣୀତ

# ନିଷ୍ଠାନୀଳମଣି ।

ଶ୍ରୀରାଧାକୃଷ୍ଣ ବସୁ, ଏମ୍, ଏଙ୍କ

ଦ୍ୱାରା

ପ୍ରକାଶିତ ।

ପ୍ରଥମ ସଂସ୍କରଣ ।



The Union Printing Works,
Printer J. Pradhan,
CUTTACK.
1920.

ଦଶଟଙ୍କା
ମୂଲ୍ୟ [redacted] ମାତ୍ର ।

ଶ୍ରୀଶ୍ରୀ ରାଧାରମଣଦେବୋ ଜୟତି ।

ଭଜ ନିତାଇ ଗୌର ରାଧେ ଶ୍ୟାମ ।
ଜପ ହରେ କୃଷ୍ଣ ହରେ ରାମ ।

# ନିଷ୍ଠାନୀଳମଣି ।



## ମଙ୍ଗଳାଚରଣ ।

ପ୍ରଥମ ଛାନ୍ଦ । ରାଗ—ମଙ୍ଗଳ ।

ଜୟ ଜୟ ସରସ୍ୱତୀ କୃପା କର ବାରେ ।
ତବ ସ୍ତୁତିକି ସମର୍ଥ କେ ଅଛି ସଂସାରେ । ୧ ।
ସକଳ କଣ୍ଠେ ନିବାସ ଯେଣୁଟି ଭ୍ରମର ।
ତୁମ୍ଭେ ଯା ପ୍ରକାଶ ହୁଅ ତାହା ନାମ ଗିର । ୨ ।
ବହୁ ଛନ୍ଦ ବନ୍ଧ କାବ୍ୟ ପ୍ରାକୃତ ମତେ ।
ମୋ ମୁଖେ ପ୍ରକାଶିଲ ସସ୍ତୁତ ପଣ୍ଡିଲତେ । ୩ ।
ଅପଣ୍ଡବାଳଙ୍କାହ୍ଲାଦ ସାମଗ୍ରୀ ବହୁତ ।
କବି ସାମର୍ଥ୍ୟ ଯଦ୍ୟପି ତହିଁରେ ପ୍ରକଟ । ୪ ।
ମହାକବି ନାମ ଖ୍ୟାତ ପ୍ରତିଷ୍ଠାଦି ଯହିଁ ।
ଏତେବେ ହେଲେ ତହିଁରୁ ମୋ ପ୍ରୟୋଜନ ନାହିଁ । ୫ ।
ତହିଁରୁ ନିବୃତ୍ତି ହେଲା ମାନସ ଏଥର ।
ମୋହିତ ହେଲେହେଁ ତହିଁ ହୃଦ୍ୟାଦନ୍ତ ନଥ । ୬ ।

କୃଷ୍ଣଭକ୍ତ ବୁଝିବେ ମୋ ଶ୍ରମ ସାର୍ଥ ଏହୁ ।
ଶବ୍ଦ ଗୂଢ଼େ ଅର୍ଥ ଗୂଢ଼େ ପ୍ରୟୋଜନ ନାହିଁ । ୭ ।
ନାସ୍ତାଗାଲମଣି ରତ୍ନ ଅଳପେ ଘଟନା ।
କରିବାକୁ ହେଉଅଛି ମୋହର କାମନା । ୮ ।
ପ୍ରସିଦ୍ଧ ଉଜ୍ଜ୍ୱଳ ରସ ସହିତ ଅଟଇ ।
ଅଦଭୂତ ରଙ୍ଗ ଯେ ସ୍ୱର୍ଣ୍ଣ ପ୍ରତେ ହୋଇ । ୯ ।
ଷଦଗ୍ର ସୁନାର ଚନ୍ଦ୍ର ପାଇବେଟି ମାନ ।
ଶ୍ରବଣ ନୟନ ମନ ସୁଖଦ ବଚନ । ୧୦ ।
ଣିର୍ବୋଧାର୍ଯ୍ୟ କାହାର ନୋହିବ ଉନ୍ନତରେ ।
ପ୍ରାପତ ହୋଇବ ସେନା ସୁଭାଗ୍ୟବନ୍ତରେ । ୧୧ ।
ସବୁ ଇନ୍ଦ୍ରିୟ ମଧ୍ୟରେ ପ୍ରଧାନ ମନ ସେ ।
ତାହାର ବଶ୍ୟର ହେଲ ଏବେ ଏହୁ ଥଶେ । ୧୨ ।
କେ ଶ୍ରୋତା କେ ବକ୍ତା ଏଥି କିଛି ନ ବର୍ତ୍ତିବ ।
ବାତୁଳ ପ୍ରବନ୍ଧେ କିଛି ବର୍ଣ୍ଣନ କରିବ । ୧୩ ।
ଯେବେ ଇଚ୍ଛା ହୋଇବ ଶୁଣିବେ ସାଧୁମାନେ ।
ବଳେ କହି ନ ପାରଇ ମୁଁ ଅପେ ଗୁମାନେ । ୧୪ ।
ଦନ୍ତେ ତୃଣଗୁଚ୍ଛ ଧରି ପଡି ଶ୍ରୀଚରଣ ।
ମାଗୁଅଛି ସଂସ୍କୃତି କରିଅ ପୂରଣ । ୧୫ ।
ଅହେ ସାଧୁଜନମାନେ କୃପା କର ବାରେ ।
ଏ ସମ୍ପୂର୍ଣ୍ଣ ହେଉ ଶ୍ଳୋକ ହୋଇ ନିର୍ବିଘ୍ନରେ । ୧୬ ।
ଅଳପ ହୋଇ ତୁଚ୍ଛର ଭକ୍ତି ତତ୍ତ୍ୱ ବୋଧ ।
ଏମନ୍ତ ପ୍ରକାର ହେଲେ କବନ୍ଧ ବିଶୁଦ୍ଧ । ୧୭ ।

ଗୋଳଜନଙ୍କର ମନ ଚଦନେ ତୂର୍ଣ୍ଣରେ ।
କୃଷ୍ଣ କୃପା ହେଉ ଏହି ପଣ୍ଡିତ ଜନରେ । ୧୮ ।
ବାଞ୍ଛାକଳ୍ପତରୁ କୃଷ୍ଣ କହଇଲେ କେବଳ ।
ଜବମୂର୍ଖ ବ୍ରହ୍ମା ଦୁଃଖେ ଦେଖିଣ ବ୍ୟାକୁଳ । ୧୯ ।

---

ଦ୍ୱିତୀୟ ଛନ୍ଦ । ରାଗ—ବଙ୍ଗଳାଶ୍ରୀ ।

ସମ୍ବନ୍ଧତତ୍ତ୍ୱ ।

ଈଶ୍ୱରସୃଷ୍ଟିରେ ସ୍ଥାବର ଜଙ୍ଗମ ଜାତି ପଣ୍ଡିତେ ଏ ଦୁଇ ।
ଜଙ୍ଗମ ମଧ୍ୟରେ ଶ୍ରେଷ୍ଠ ଜୀବ ଜାତି ଭୁବନେ ଅଛନ୍ତି ଭଲ । ୧ ।
ଯାର ତହିଁ ବେଦ ବତ୍ତିଷ ତହିଁ କେ ନାମ ରୂପ ନ ମାନନ୍ତି ।
କେହି ଥିବ ଅବା ବୋଲିଣ ତର୍କରେ ଭ୍ରମ ହୋଇ ମରୁଥାନ୍ତି । ୨ ।
ବେଦ ମଧ୍ୟେ ହିନ୍ଦୁ ମୁସଲମାନ ଏ ହିନ୍ଦୁ ତହିଁ ଆମ୍ଭ ମତ ।
ବ୍ରହ୍ମ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଏ ଚ୍ୟୁର୍ଣ୍ଣ ଚାରି ଆଶ୍ରମେ ବଦତ । ୩ ।
ବେଦ ପ୍ରବୃତ୍ତି ନିବୃତ୍ତି ଦୁଇ ମାର୍ଗ ପ୍ରବୃତ୍ତି ସଂସାରେ ସୁଖ ।
ନିବୃତ୍ତି ମାର୍ଗେ ଜନ୍ମ ମୃତ୍ୟୁ ଛୁଟଇ ସେ ଧର୍ମ ଅତି ଅଲକ୍ଷ । ୪ ।
ଦ୍ୱୈତବାଦୀ ବଇଷ୍ଣବ ବୋଲନ୍ତି ଅଦ୍ୱୈତବାଦୀ ଯେ ସ୍ମାର୍ତ୍ତ ।
ଈଶ୍ୱର ପରେ ଭେଦାଭେଦ ସମ୍ବନ୍ଧ କରନ୍ତି କରି ତା ଉକ୍ତି । ୫ ।
ବୋଲନ୍ତି ଉପାଧି ଅଛି ଯେବେ ତେବେ ଭେଦହିଁ ଜୀବବ୍ରହ୍ମର ।
ଉପାଧି ଛାଡିଲେ ଜୀବ ବ୍ରହ୍ମ ଏକ ତହିଁରେ କାହିଁ ଅନ୍ତର । ୬ ।
ଶୈବ, ଶାକ୍ତ, ଗାଣପତ୍ୟ, ସୌର ଯେ ଚାରି ସମ୍ପ୍ରଦା ତାଙ୍କର ।
ପ୍ରବୃତ୍ତି ନିବୃତ୍ତି ଦୁଇ ମାର୍ଗେ ଭ୍ରମ ଗତାଗତ ନିରନ୍ତର । ୭ ।
ସେବ୍ୟ ସେବକ ସମ୍ବନ୍ଧ ବୈଷ୍ଣବର କୃଷ୍ଣ ପ୍ରଭୁ ଅମ୍ଭେ ଦାସ ।
ଶ୍ରୀ ବ୍ରହ୍ମ ରୁଦ୍ର ସନକ ସମ୍ପ୍ରଦାୟ ଚତୁରରୂପେ ପ୍ରକାଶ । ୮ ।

ଶ୍ରୀ ଯେ ଲକ୍ଷ୍ମୀ ତାଙ୍କ ମତରେ ପ୍ରକାଶ ହୋଇଲେ ଯେ ରାମାନୁଜ ।
ବ୍ରହ୍ମାଙ୍କ ମତ ଭକ୍ତିରେ ଯେ ବିଦିତ ମାଧ୍ୱ ଆଚାର୍ଯ୍ୟ ହେଳ । ୯ ।
ସନକମାନଙ୍କ ମତରେ ପ୍ରଧାନ ହୋଇଲେ ଯେ ନିମ୍ବାନୁଜ ।
ଶିବଙ୍କ ମତ ଗ୍ରହଣ କଲେ ବିଷ୍ଣୁସ୍ୱାମୀ ଏପ୍ରକାରେ ହେଳ । ୧ ।
ଶିଷ୍ୟାନୁଶିଷ୍ୟ କ୍ରମରେ ଭୁବନରେ ଭରିଲା ବୈଷ୍ଣବମତ ।
କ୍ରମେ ଚଲି ଆସୁଛି ଚାର୍ତ୍ତିର ନୋହେ ତେମନ୍ତ । ୧୧ ।

ତଥାହି ।—

ଅତଃ କଲୌ ଭବିଷ୍ୟନ୍ତି ଚତ୍ୱାରଃ ସମ୍ପ୍ରଦାୟିନଃ ।
ସମ୍ପ୍ରଦାୟଃ ସ୍ମୃତା ଯେ ଚତ୍ୱାରଂ ନିଷ୍ଫଳଂ ଭବେତ୍ ॥
ଶ୍ରୀ ରୁଦ୍ର ବ୍ରହ୍ମ ସନକାଖ୍ୟ ସମ୍ପ୍ରଦାୟ ଚତୁଷ୍ଟୟଂ ।
ଶ୍ରୀ ରାମାନୁଜ ବିଷ୍ଣ୍ୟଗୋ ମାଧବଃ ପଦ୍ମସମ୍ଭବଃ ।
ନିମ୍ବାଦିତ୍ୟଶ୍ଚ ସନକୋ ବିଷ୍ଣୁସ୍ୱାମୀ ଚ ଶଙ୍କରଃ ଇତି ॥

ଚାରି ସମ୍ପ୍ରଦାର ଚାରି ଧାମ ରାମନାଥ ବଦରିକାଶ୍ରମ ।
ଦ୍ୱାରକା ପୁରୁଷୋତ୍ତମ ଚାରିମଧ୍ୟେ ବୃନ୍ଦାବନ ନିତ୍ୟଧାମ । ୧୨ ।
କୃଷ୍ଣର ଧାମ ନାମରୂପ ଅନେକ କେ କେଉଁ ପ୍ରକାରେ ଭଜେ ।
ନାରାୟଣ ନରସିଂହ ରାମ କୃଷ୍ଣ ଯାହା ମନ ଯହିଁ ମଜେ । ୧୩ ।
କୃଷ୍ଣ ମାୟାରେ ଦ୍ୱିଜେ ଚାର୍ତ୍ତି ବହୁତ ବାଇଷ୍ଣବତ ଅଳପ ।
ଜୀବର ଚତୁରେ ହେଉ ମୋ ତାଙ୍କ ସଙ୍ଗେ କହିବା ପାଇଁ ଅନାୟେ ।
ନାରାୟଣ ସ୍ୱୟଂ ଅଭିମାନ ଯାର ସେ ସଙ୍ଗେ କେଉଁ ବିବାଦ ।
ଆମ୍ଭର ପ୍ରଭୁ କୃଷ୍ଣ ଦାସ ହୋଇଣ ସେବିବ କି ପଦ୍ମପାଦ । ୧୪ ।
ବଇଷ୍ଣବ ମତ ଆମ୍ଭର ଏ ଅଭିମାନେ ସତ ଥାଉ ଦିନ ।
ମତାନ୍ତର ଲୋକ ସଙ୍ଗ ବିବାଦକୁ ଅଛି କେଉଁ ପ୍ରୟୋଜନ ।

ନାରଦ ବ୍ୟାସ ସନକ ଶୁକଦେବ ବଶିଷ୍ଠ ଅଦଙ୍କ ମତ ।
ଆଚରଣ କର ତାଙ୍କ କୃତ ପୁରାଣରେ ଯେ ହୋଇଛୁ ଉକ୍ତ ।୬।
ପୁଣ୍ଡ୍ରାଙ୍କ ବାସୁଦେବ ପର ବାସୁଦେବ ବୋଲାଇବା କାହିଁ ।
କହେ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ମୁକୁନ୍ଦ ବ ଇଚ୍ଛା ନାହିଁ ।୭।

---

ତୃତୀୟ ଛନ୍ଦ । ରାଗ—ମଙ୍ଗଳଗୁଜ୍ଜରୀ ।

ଶାସ୍ତ୍ରନିଷ୍ଠା ।

ଅନେକ ଶାସ୍ତ୍ର ବହୁତ ବିଦ୍ୟା ଏ ସଂସାରେ ।
ଅଳ୍ପକାଳେ ବହୁବିଘ୍ନ ପଡ଼ଇ ତହିଁରେ ଯେ । ୧ ।
ଏଥିରେ ଯେ ସାର ତାହା ଉପାସନା କର ।
କ୍ଷୀରରୁ ସାରାଂଶ ଭକ୍ଷେ ହଂସ ଯେ ପ୍ରକାର ଯେ । ୨ ।

ତଥାହି ।—

ଅନେକଶାସ୍ତ୍ରଂ ବହୁଧା ଚ ବେଦ୍ୟା ସ୍ୱଳ୍ପଶ୍ଚ କାଲଃ ବହୁବିଘ୍ନତା ଚ ।
ଯତ୍ସାରଭୂତଂ ତଦୁପାସନୀୟଂ ହଂସୋ ଯଥା କ୍ଷୀରମିବାମ୍ବୁମିଶ୍ରଂ ॥

ଅନେକ ପୁରାଣଗ୍ରନ୍ଥ ବ୍ୟାସଦେବ କଲେ ।
ତତ୍ତ୍ୱ ସଂଶୟ ଗତ ନୋହି ଭ୍ରମ ହେଲେ । ୩ ।
ଶ୍ରୀନାରଦ ଗୋସ୍ୱାମୀର ଅନୁଗ୍ରହ ପାଇ ।
ଭକତେ କୃଷ୍ଣ ଆବେଶେ ଅବତାର ହୋଇ ଯେ । ୪ ।
ହରି ବର୍ଣ୍ଣିଲେ ମୋହ ବିନା ତତ୍ତ୍ୱ ମୋର ।
କେହି ଜାଣେ ଏହା ଦେହେଁ ହେବ ଅବତାର ଯେ । ୫
ଏଣୁ ମହାପୁରାଣ ଯେ ଶ୍ରୀମଦ୍ଭାଗବତ ।

କର୍ମଜ୍ଞାନ କହ୍ନ କଲେ ଭକ୍ତିର ସିଦ୍ଧାନ୍ତ ଯେ । ୬ ।
ପରମାତ୍ମା ବ୍ରହ୍ମ ଭଗବାନ ତିନି କଥା ।
ବୁଝାଇ କହିଲେ ଯେତେ ଭେଦାଭେଦ ଯଥା । ୭

ତଥାହି :—

ବଦନ୍ତି ତତ୍ତତ୍ତ୍ୱବିଦସ୍ତତ୍ତ୍ୱଂ ଯଜ୍ଜ୍ଞାନମଦ୍ୱୟଂ ।
ବ୍ରହ୍ମେତି ପରମାତ୍ମେତି ଭଗବାନିତି ଶବ୍ଦ୍ୟତେ ॥

"ସ୍ତ୍ରିୟ ଉରଗେନ୍ଦ୍ର" ଶ୍ଳୋକେ ଶୁଣସ୍ୱ ଦୁଅନ୍ତେ
ଅର୍ଥ ପ୍ରକଟ ହୋଇଲା ପୁଣ ତାର ପ୍ରାନ୍ତେ ଯେ । ୮ ।
ପ୍ରିୟଙ୍କର ପ୍ରାପ୍ତି କୃଷ୍ଣ ସୂର୍ଯ୍ୟର ସଦୃଶ ।
ଅରି ପ୍ରାପ୍ତି ବ୍ରହ୍ମ ତା କିରଣ ନିର୍ବିଶେଷ ଯେ । ୯ ।

ତଥାହି :—

ନିଭୃତ ମରୁନ୍ମନୋଽକ୍ଷଦୃଢ଼ଯୋଗଯୁଜୋ ହୃଦି ଯନ୍
ମୁନୟ ଉପାସତେ ତଦରୟୋଽପି ଯଯୁଃ ସ୍ମରଣାତ୍ ।
ସ୍ତ୍ରିୟ ଉରଗେନ୍ଦ୍ରଭୋଗ ଭୁଜଦଣ୍ଡ ବିଷକ୍ତଧିୟୋ
ବୟମପି ତେ ସମାଃ ସମଦୃଶୋଽଙ୍ଘ୍ରି ସରୋଜସୁଧାଃ । ଲଠ ।

ଭୁକ୍ତି ମୁକ୍ତି ତୁଚ୍ଛ କରି ଭକ୍ତି କଲେ ସାର ।
କ୍ରମରେ ବର୍ଣ୍ଣିଲେ ଚତୁର୍ବିଂଶ ଅବତାର ଯେ । ୧ ।

ତଥାହି :—

ଭୁକ୍ତି ମୁକ୍ତି ସ୍ପୃହା ଯାବତ୍ ପିଶାଚୀ ହୃଦି ବର୍ତ୍ତତେ ।
ତାବତ୍ ଭକ୍ତି ସୁଖସ୍ୟାତ୍ର କଥମଭ୍ୟୁଦୟୋ ଭବେତ୍ ॥
ଏତେ ଚାଂଶକଳାଃ ପୁଂସଃ କୃଷ୍ଣସ୍ତୁ ଭଗବାନ୍ ସ୍ୱୟଂ ।
ଇନ୍ଦ୍ରାରି ବ୍ୟାକୁଳଂ ଲୋକଂ ମୃଡୟନ୍ତି ଯୁଗେଯୁଗେ ॥

ଅବତାରୀ କୃଷ୍ଣର କହନ୍ତେ ଅବତାର ।
ସ୍ୱୟଂ ଭଗବାନ ଏ ପୁରୁଷେ ଅଂଶ ଯାର ଯେ । ୧ ।

ତଥାହି ।—ଏତେ ଚାଂଶ କଳାଃ ପୁଂସଃ । ଇତି ।

ଅନେକ ଭକ୍ତମାନଙ୍କ ମହିମା କଥନେ ।
ଶେଷେ ସାର ଯଜ୍ଞପତ୍ନୀ ଗୋପୀ ରସଦାନେ ଯେ । ୧୧ ।
ଜାଣି ଏ ଗ୍ରନ୍ଥରେ ସାର ଶ୍ରୀଦଶମସ୍କନ୍ଧ ।
ବ୍ରଜଲୀଳା ସୁରସ ପ୍ରସଙ୍ଗ ଅନୁବନ୍ଧ ଯେ । ୧୨ ।
ତହିଁ ବେଣୁଗୀତା ଯୁଗଲଗୀତା ଏହି ଦୁଇ ।
ରାସପଞ୍ଚାଧ୍ୟାୟୀ ସବୁଠାରୁ ଶ୍ରେଷ୍ଠ ହୋଇ ଯେ । ୧୩ ।
ତହିଁ ମଧ୍ୟେ ଏକତ୍ରିଂଶ ଅଧ୍ୟା ଶ୍ରେଷ୍ଠତର ।
ତାର ପ୍ରାନ୍ତ ଶ୍ଳୋକ ଅଟେ ଅମୃତ ଭଣ୍ଡାର ଯେ । ୧୪ ।

ତଥାହି ।—ଯତ୍ତେ ସୁଜାତଚରଣାମ୍ବୁରୁହଂ ସ୍ତନେଷୁ
ଭୀତାଃ ଶନୈଃ ପ୍ରିୟ ଦଧୀମହି କର୍କଶେଷୁ ।
ତେନାଟବୀମଟସି ତଦ୍ ବ୍ୟଥତେ ନ କିଂସ୍ୱିତ୍
କୂର୍ପାଦିଭିର୍ଭ୍ରମତି ଧୀର୍ଭବଦାୟୁଷାଂ ନଃ ॥

ପ୍ରେମସାର ପୂର୍ଣ୍ଣ ରାଗ ସଯୋଗ ଯହିଁରେ ।
ନାହିଁ ନାହିଁ ନାହିଁ ଏ ସ୍ୱଭାବ ବ୍ରହ୍ମାଣ୍ଡରେ ଯେ । ୧୫ ।
ଯେଉଁ ପ୍ରେମେ କୃଷ୍ଣ ବୋଲେ ସୁଝି ନ ପାରିଲି ।
ସେ ଭାବରୁ ଅଜଠାରୁ ବଞ୍ଚିତ ହୋଇଲି । ୧୬ ।

ତଥାହି ।—ନ ପାରୟେଽହଂ ନିରବଦ୍ୟସଂଯୁଜାଂ,
ସ୍ୱସାଧୁକୃତ୍ୟଂ ବିବୁଧାୟୁଷାପି ବଃ ।

ଶା ମା ଭଜନ୍ ଦୁଷ୍କରି ସେହୁଂକ୍ଷଳାଂ,
ସର୍ବସ୍ୱଂତଃ ପ୍ରସାଦୁ ସାଧୂନା ॥

ଏଣୁ ଏ ଗ୍ରନ୍ଥରେ କର ମୂଢ଼ତ ବିଶ୍ୱାସ ।
ସେହି କୃଷ୍ଣ ଗୌରରୂପେ ଆସ୍ୱାଦଲେ ରସ ଯେ । ୧୮ ।
କିଣା ହେଉ ଗୋପୀଙ୍କର ତାଙ୍କ ପଗ୍ ହୋଇ ।
ବିରହ ପ୍ରଳାପ ସଦା ନିଜରୂପ ଧାରି । ୧୯ ।
ଭାଗବତ ମର୍ମ୍ମ ଅନର୍ପିତଚରସ୍ୱାଂଚର ।
ଉଜ୍ଜଳ ରସସମ୍ପଦ ଭକ୍ତି ଅପଣାର ଯେ । ୨୦ ।
ପାତ୍ରେ ଦେଲେ ଦାନ ସେ ପ୍ରକାଶ ଗ୍ରନ୍ଥାନ୍ତରେ ।
ଶ୍ରୀରୂପ ସନାତନାଦ ଏମାନଙ୍କ ଦ୍ୱାରେ ଯେ । ୨୧ ।
ସେ ଗ୍ରନ୍ଥ ଭୁବନେ ଘଣ୍ଟ କେ ଅବା ବୁଝନ୍ତ ।
ଗୌର କୃପା ହୁଏ ଯାକୁ ସେ ତାହା ଜାଣନ୍ତି । ୨୨ ।

ତଥାହି ।—ଚୈତନ୍ୟଂ କୋଟୀକନ୍ଦର୍ପ କୋଟୀପ୍ରକାଶକା ତ୍ରୁଧା ।
ବିନା ଚୈତନ୍ୟଚନ୍ଦ୍ରେଣ, ରସଭକ୍ତିର୍ନଲଭ୍ୟତେ ।
ବସ୍ତ୍ରତଃ ଭଜନଂ ତସ୍ୟ ପ୍ରେମଭକ୍ତି ର୍ନ ଲଭ୍ୟତେ ॥ ୨୭ ।

ଗଦାଧର ବିନା ଯେହୁ ଶ୍ରୀଗୌରାଙ୍ଗ ଭଜଇ ।
ନିଷ୍ଫଳ ତା ଭଜନ ପାଇବ ଅବା କାହିଁ ଯେ । ୨୩ ।

ତଥାହି ରସିକପ୍ରିୟାୟାଂ ।—
ଗଦାଧରଂ ବିନା ଯସ୍ତୁ ଗୌରଚନ୍ଦ୍ର, ମୁପାସତେ ।
ନିଷ୍ଫଳଂ ଭଜନଂ ତସ୍ୟ ରସଭକ୍ତି ର୍ନ ଲଭ୍ୟତେ । ୨୪ ।

ଶ୍ରୀରୂପ ଗୋସ୍ୱାମୀ ଆଦଙ୍କର ମତ ଯେହି ।
ବେଦବଚନ୍ତୁ ଅଧିକ ଅନ୍ୟ ମାନ୍ୟ ତାହି ଯେ । ୨୪ ।

ସେ ଅନୁସ୍ମୃତି ବର୍ଣ୍ଣନା କରୁଥିବେ ଯେତେ ।
ଦଇବେ ଅଦରଣୀୟ ଅଛଇ ଉଚିତେ ଯେ ।୧୫। ଯଥା ।—

ବେଦାବିଭିନ୍ନା ସ୍ମୃତୟୋବିଭିନ୍ନା ନା ସୌ ମୁନିର୍ଯସ୍ୟ ମତଂ ନ ଭିନ୍ନଂ ।
ଧର୍ମସ୍ୟ ତତ୍ତ୍ୱଂ ନିହିତଂ ଗୁହାୟାଂ ମହାଜନୋ ଯେନ ଗତଃ ସ ପନ୍ଥାଃ । ଇତି

ବୃଥା କଥା ହେଉ ଯେବେ ଉପାଦେୟ ହେବ ।
ଅମ୍ଭ ମତ ଭେଦ ତା ଶ୍ରବଣ ନ କରିବ ଯେ ।୧୬।
ପୁରାଣ ସମ୍ମତ ଯେବେ ମତାନ୍ତର ତହିଁ ।
ତାହା ହେଲେ ଅମ୍ଭର ସେ ପ୍ରୟୋଜନ ନାହିଁ ।୧୭।
ବହୁ ଗ୍ରନ୍ଥ କଳାଭ୍ୟାସ ବ୍ୟାଖ୍ୟା ବାଦ ତେଜ ।
ଶ୍ରୀରୂପଗୋସ୍ୱାମୀ ଆଜ୍ଞା ନିଜ ମନେ ହେଜ ।୧୮।

ତଥାହି ।—

ବହୁଗ୍ରନ୍ଥକଳାଭ୍ୟାସବ୍ୟାଖ୍ୟାବାଦବିବର୍ଜ୍ଜିତା ।
ବର୍ଣ୍ଣାଶ୍ରମେଣ ଗୁରୋଃ ସେବା ସାଧୁବର୍ତ୍ମାନୁବର୍ତ୍ତନଂ । ଇତି ।

ନିଷ୍ଠାନୀଳମଣି ଏ ତୃତୀୟ ଛନ୍ଦ ପୂର୍ଣ୍ଣ ।
କବିସୂର୍ଯ୍ୟ ବ୍ରହ୍ମା ଶାସ୍ତ୍ରନିଷ୍ଠାରେ ଏସନ ଯେ ।୧୯

---

ଚତୁର୍ଥ ଛନ୍ଦ । ରାଗ—କାମୋଦୀ । ମଥୁରାବିଜେ ବାଣୀ ।

ଶ୍ରୀଗୁରୁନିଷ୍ଠା ।

ଦୀକ୍ଷା କରିବାର କର୍ତ୍ତବ୍ୟ ଜୀବର ।
ସେ ବିନା ଶୁଦ୍ଧ ନୁହେ ଜୀବ ଶରୀର ଯେ ।
ଦୀକ୍ଷାହୀନ ହୋଇଣ ଦେହକୁ ମରଇ ।
ପଶୁ ଯୋନିରେ ନିଷ୍ଠା ଜନ୍ମ ଲଭଇ ଯେ ।୧।

ତଥାହି ଦୀକ୍ଷାପଟଳେ ।—

ଅଦୀକ୍ଷିତସ୍ୟ ବାମୋରୁ କୃତଂ ସର୍ବମନର୍ଥକଂ ।
ପଶୁଯୋନିମବାପ୍ନୋତି ଦୀକ୍ଷାହୀନୋ ନରୋ ମୃତଃ ॥
ଅଥାସ୍ୟା ଦକ୍ଷିଣାନନ୍ତ ନନ୍ତ ଦେବା ର୍ଚ୍ଚନାଦତ୍ ।
ନାଧିକାରେ ତଥା ଭୂର୍ଯ୍ୟା ଦାମ୍ନାନଂ ସର୍ବ ସମ୍ମତଂ । ଇତି ।

ତୋ ନାମ ଶିଷ୍ୟ ହେଲୁ ମୋ ନାମ ଗୁରୁ ।
କି ଲାଭ ହୋଇବ ଏମନ୍ତ ଦୀକ୍ଷାରୁ ।
ସଦ୍ଗୁରୁ ବୃଦ୍ଧି କରିବାର ଉଚିତ ।
ଏଥିକୁ ଅଛନ୍ତି ବହୁ ଶାସ୍ତ୍ରସମ୍ମତ ଯେ । ୨ ।

ତଥାହି ଦୀକ୍ଷାସାରେ ।—

ଯଥା ଶ୍ରୀ ବୈଷ୍ଣବୀଂ ଦୀକ୍ଷାଂ ପ୍ରସାଦଂ ସଦ୍ଗୁରୁ ର୍ଦ୍ଦଦୌ ।
ତଥା ଶ୍ରୀ ବୈଷ୍ଣବ ଧର୍ମଂ କଥଂ ଭଗବତୋ ଭବେତ୍ ॥

ଗୁରୁ ଲକ୍ଷଣ ଶିଷ୍ୟ ଲକ୍ଷଣ ଯାହା ।
ଦୀକ୍ଷା ପଟଳେ କହି ଅଛନ୍ତି ତାହା ଯେ ।
ବୋଇଲେ ଅଭେଦ୍ୟ ତାଙ୍କ ସ୍ୱଭାବ ଚାହିଁ ।
ତଦନ୍ତେ ତାଙ୍କୁ ଗୁରୁ କରଣ ମାନି ଯେ । ୩ ।
ତେସନେ ଗୁରୁ ଜାଣି ଶିଷ୍ୟ ଲକ୍ଷଣ ।
କୃପା କରିବେ ପଞ୍ଚେ କହେ ପୁରାଣ ଯେ ।
କାମେ ବା ଲୋଭେ ଯେବେ ସେବକ କରେ ।
ଶାପ ଦଅନ୍ତି ଇଷ୍ଟ ସେ ଦୁଇଙ୍କରେ ଯେ । ୪ ।
ଶଙ୍ଖଚକ୍ର ଥିବ ବୈଷ୍ଣବ ବ୍ରାହ୍ମଣ ।
ଗୁରୁ ସେ ରସାମୃତସିନ୍ଧୁ ପ୍ରମାଣ ଯେ ।

ପଦ୍ମପୁରାଣରେ ହୋଇଛି ସମ୍ମତ ।
ଗୁରୁଙ୍କୁ ଯୋଗ୍ୟ ବ୍ରାହ୍ମଣଙ୍କ ଉଚିତ ଯେ । ୫ ।

ତଥାହି ରସାମୃତସିନ୍ଧୌ :—

ତସ୍ମାଦ୍‌ଗୁରୁଂ ପ୍ରପଦ୍ୟେତ, ଜିଜ୍ଞାସୁଃ ଶ୍ରେୟଉତ୍ତମଂ ।
ଶବ୍ଦେ ପରେ ଚ ନିଷ୍ଣାତଂ ବ୍ରାହ୍ମଣ୍ୟଂ ସମୁପାଶ୍ରୟେତ୍ ॥
ମହାଭାଗବତଶ୍ରେଷ୍ଠ ବ୍ରାହ୍ମଣୋବୈ ଗୁରୁର୍ନୃଣାଂ ।
ସର୍ବେଷାମେବ ଲୋକାନାମସୌ ପୂଜ୍ୟୋ ଯଥା ହରିଃ ॥
ଶବ୍ଦେ ପରେ ଚ ନିଷ୍ଣାତଂ ବ୍ରାହ୍ମଣୋବୈ ଗୁରୁର୍ନୃଣାଂ ।
ସର୍ବେଷାମେବ ଲୋକାନାମସୌ ପୂଜ୍ୟୋ ଯଥା ହରିଃ ।

ମହାକୁଳପ୍ରସୂତ ସର୍ବ ଯଜ୍ଞରେ ।
ଦୀକ୍ଷିତ ବହୁ ଶାଖା ବେଦ ପଢ଼ିଲେ ଯେ ।
ଅବୈଷ୍ଣବ ଯେବେ ସେ ଗୁରୁ ନୋହି ।
ଶ୍ୱପଚ ଯଦ ଭକ୍ତ ଗୁରୁଟି ସେହି ଯେ । ୬ ।

ତଥାହି ।—

ମହାକୁଳପ୍ରସୂତୋଽପି ସର୍ବଯଜ୍ଞେଷୁ ଦୀକ୍ଷିତଃ ।
ସହସ୍ରଶାଖାଧ୍ୟାୟୀ ଚ ନ ଗୁରୁଃ ସ୍ୟାଦବୈଷ୍ଣବଃ ॥
ଗୃଣ୍ଣାନୋଽପି ମୁନିଶ୍ରେଷ୍ଠ ବିଷ୍ଣୁଭକ୍ତି ପରାୟଣଃ ।
ବିଷ୍ଣୁଭକ୍ତିବିହୀନସ୍ତୁ ଦ୍ୱିଜୋଽପି ଶ୍ୱପଚାଧମଃ । ଇତି ।

କୃଷ୍ଣଭକ୍ତି ନ ଜାଣେ ଯେ ଅନ୍ୟ ଧର୍ମ ।
ଶିକ୍ଷା ଦିଅନ୍ତି ସେହୁ ଗୁରୁ ଅଧମ ଯେ ।
ଅନ୍ଧକୁ ଅନ୍ଧ ଯେସନେ ବାଟ କଢ଼ାଇ ।
କୂପେ ପଡ଼ନ୍ତି ନର୍କେ ପତନ ହୁଇ ଯେ । ୭ ।

ତଥାହି ଶ୍ରୀଭାଗବତେ ।—

ନ ତେ ବିଦୁଃ ସ୍ୱାର୍ଥଗତିଂ ହି ବିଷ୍ଣୁଂ,
ଦୁରାଶୟା ଯେ ବହିରର୍ଥମାନିନଃ ।
ଅନ୍ଧା ଯଥାନ୍ଧୈରୁପନୀୟମାନା-
ସ୍ତେଽପୀଶତନ୍ତ୍ର୍ୟାମୁରୁଦାମ୍ନି ବଦ୍ଧାଃ ॥
ସ୍କାନ୍ଦେ । କୃଷ୍ଣଭକ୍ତିଂ ନୋପଦିଶନ୍ତି ଯେ ନରାଃ ।
ତେ ଯାନ୍ତି ତଦାକୃତେ ଯତାଦ୍ୟାବଦପରକ୍ଷମ ॥ ଇତି ।

ଅନ୍ତ୍ରାଗେ୍ୟ ଅବୈଷ୍ଣବ ଗୁରୁ ବୁଝିବ ।
ତା ମନ୍ତ୍ର ଲେଖି ଜଳେ ଭସାଇ ଦେବ ଯେ ।
ପୁଣି ବିଧାନେ କର ବୈଷ୍ଣବ ଗୁରୁ ।
ପଦ୍ମପୁରାଣେ କହେ ଏ ଆଜ୍ଞା କରୁ ଯେ । ୮ ।

ତଥାହି ପାଦ୍ମେ ।—
ଅବୈଷ୍ଣବୋପଦିଷ୍ଟେନ, ମନ୍ତ୍ରେଣ ନିରୟଂ ବ୍ରଜେତ୍ ।
ପୁନଶ୍ଚ ବିଧିନା ସମ୍ୟକ୍ ଗ୍ରାହୟେଦ୍ ବୈଷ୍ଣବ ଗୁରୁଂ ॥

ଏତେକେ ଏ ବିଷୟ ମନରେ ଦେଖ ।
ବାସନା ମୂଳ ଫୂଲ ଦେଖି ସେ କାର୍ଯ୍ୟ ଯେ ।
ଶ୍ରୀକୃଷ୍ଣ ଭକ୍ତି ପ୍ରୟୋଜନ ଅଟଇ ।
ଯେ କାଣେ କୃପା କରେ ଗୁରୁଟି ସେହି ଯେ । ୯ ।

ଶିଷ୍ୟ ଲକ୍ଷଣ କହୁଥାଇଁ ଏଥର ।
ବିଶୁଦ୍ଧ କୁଳେ ଜନ୍ମ ଅଟେ ସୁନ୍ଦର ଯେ ।
ଶ୍ରୀଭଗବଦ୍ଭକ୍ତ ସତ୍ୟବାଦୀ ପ୍ରବୀଣ ।
ଅଦମ୍ଭ କାମୀ କ୍ରୋଧୀ ନୋହିବ ପୁଣ ଯେ ।୧୦। ଅଥ :—

ମନ୍ତ୍ରମୁକ୍ତାବଳ୍ୟାଂ :—

ଶିଷ୍ୟଂ ଶୂଦ୍ର ନୃପସ୍ୟ ଶ୍ରୀମାନ୍ ବର୍ଣ୍ଣତଃ ପ୍ରୀ ପ୍ରତର୍ଜନଃ ।
ସତାଂବାକ୍ ପୁଣ୍ୟତପସୋ ଦ୍ରବଣୀ ତମ୍ବର୍ଜିତଃ ।।
କାମକ୍ରୋଧପରିତ୍ୟାଗୀ ଭକ୍ତିଶ୍ଚ ଗୁରୁପାଦୟୋଃ ।
ଇତ୍ୟାଦ ଲକ୍ଷଣୈର୍ଯୁକ୍ତଃ ଶିଷ୍ୟୋ ଭବତି ନାନ୍ୟଥା ।।

ବଶ୍ୱାସେ ସେବା କର ଗୁରୁଚରଣ ।
ବେଦ କହେ ନ ଦେଇ ଉର ପ୍ରମାଣ ଯେ ।
ଶୂଦ୍ରେ ବେଦ ପଢ଼ନ୍ତି ବୋଲି ବ୍ରାହ୍ମଣେ ।
ନିନ୍ଦା କରିବେ ଯେଣୁ ଏହୁ କାରଣେ ଯେ । ୧୧ ।
ତଥାପି ପୁରାଣର ପ୍ରମାଣ ଦେଇ ।
ଗୁରୁ ଅଗେ ନ ପୂଜ କୃଷ୍ଣ ପୂଜାଇ ଯେ ।
ଦୁର୍ଗତି ପାଏ ପୂଜିବାର ନିଷ୍ଫଳ ।
ବହୁତ କହିବାକୁ ନାହିଁତ କାଳ ଯେ । ୧୨ ।

ତଥାହି ଜ୍ଞାନାର୍ଣ୍ଣବେ :—

ଗୁରୋଃ ସନ୍ନିହିତୋ ଯସ୍ତୁ ପୂଜୟେଦନ୍ତତୋ ଦେବଂ ।
ସ ଦୁର୍ଗତିମବାପ୍ନୋତି, ପୂଜା ଚ ବିଫଳା ଭବେତ୍ ।।

ଏକଥାମାନ କହିବାକୁ ଡର ।
ଏବେ ଭିନ୍ନ ସ୍ୱଭାବ ଭୁବନେ ପୂର ଯେ ।
ଦିଗମ୍ବର ଗ୍ରାମରେ କି ପୀତାମ୍ବର ।
ସର୍ବେ ଦେଖି ବୋଲିବେ ବଚନଗ୍ରେର ଯେ । ୧୩ ।
ଏବେ କେବଳ ଗୁରୁଘର ବସ୍ତ୍ରର ।
କାହିଁ ପାଇଁକି ଗୁରୁ ସେ ହେଲେ ଦୂର ଯେ ।

ଶିଷ୍ୟ ଆନନ୍ଦ ଗୁରୁ କଲଣି ମୁହିଁ ।
ଗୁରୁ ଉଦ୍ୟମ କଲୁ ମିଳିବା ପାଇଁ ଯେ । ୧୪ ।
ଗୁରୁ ନ କହେ ବଦନେ ଶୁଣ ରେ ବାବୁ ।
ଶ୍ରୀକୃଷ୍ଣ ଭଜ ଉଦ୍ଧର୍ତ୍ତର୍ଭୁ ଉରବୁ ଯେ ।
ଶିଷ୍ୟ ନ ପୃଚ୍ଛେ ପଡ଼ି ଗୁରୁ ଚରଣ ।
କି ପଥେ ଗମନେ ମୋ କେଉଁ କାରଣ ଯେ । ୧୫ ।
ଏ ଗୁରୁ ଶିଷ୍ୟ କଥା କହି ନ ପାରି ।
ଆଉ ବିଷୟ ଏବେ ଶୁଣ ଶଙ୍କରୀ ଯେ ।
ଶୁଣିଲେ ପାଶୋରିବା କଥା ଚଢୋଇ ।
ଉଦ୍ୟମ କରିବ ଚସ ବିଷୟ ପାଇଁ ଯେ । ୧୬ ।
ଅଜ୍ଞାନ ଅନ୍ଧକାରେ ଅନ୍ଧ ଜନଙ୍କୁ ।
ଜ୍ଞାନାଞ୍ଜନଶଲାକା ଦେଇ ଚକ୍ଷୁକୁ ଯେ ।
ମହାଜନଙ୍କ ପଥ ଦୃଶ୍ୟ କରନ୍ତି ।
ଛବଣ କୀର୍ତ୍ତିନାଦ ଯା ପ୍ରବର୍ତ୍ତିନ୍ତି ଯେ । ୧୭ । ତଥାହି :—

ଅଜ୍ଞାନତିମିରାନ୍ଧସ୍ୟ ଜ୍ଞାନାଞ୍ଜନଶଲାକୟା ।
ଚକ୍ଷୁରୁନ୍ମୀଳିତଂ ଯେନ ତସ୍ମୈ ଶ୍ରୀଗୁରବେ ନମଃ ।।

ଶ୍ରଦ୍ଧା ଜନ୍ମିଲେ ଭାଗ୍ୟେ ଗୁରୁଚରଣ ।
ସେବଇ ସଦା କରେ ଗୁରୁ ସ୍ମରଣ ଯେ ।
ଶିଷ୍ୟର ଶ୍ରଦ୍ଧା ଦେଖି ସନ୍ତୁଷ୍ଟଚିତ୍ତେ ।
ଅପଣା ମର୍ମ୍ମ ଧନ ଦିଅନ୍ତି ହିତେ ଯେ । ୧୮ ।
ଗୁରୁପାଦାଶ୍ରୟଟି ଏହାର ନାମ ।
କୃଷ୍ଣଦୀକ୍ଷାକୁ ଶିକ୍ଷା କରେ ଉତ୍ତମ ଯେ ।

ସିଦ୍ଧମନ୍ତ୍ର ପାଇଣ ତା ସିଦ୍ଧ ଜନୁ ।
ସିଦ୍ଧ ଧାମରେ ମନ କରେ ବିଶ୍ରାମ ଯେ । ୧୯ ।
ନାମ ରୂପ ଯେ ବୟସ ବେଶ ନିବାସ ।
ଏ ଅଙ୍ଗ ସାଧନା ଅଟେ ଏକାଦଶ ଯେ ।
ନିତ୍ୟ ସିଦ୍ଧଙ୍କ ଭାବ ପ୍ରକାଶ ହୃଦେ ।
ହେଲେ ସିଦ୍ଧ ତା ବୋଲି ଜାଣିବ ଭେଦେ ଯେ । ୨୦ ।

ତଥାହି ।—

ନାମରୂପବୟୋବେଶ, ନିବାସ କୃଷ୍ଣମେବଚ ।
ଗଣନିଷ୍ଠା ଚ ସମ୍ବନ୍ଧା ପୃଥଅଙ୍ଗୋପଙ୍ଗସ୍ୱଣଃ ।
ପାଲ୍ୟଦାସୀ ନିବାସସ୍ତୁ ଏକାଦଶ ତଥା ସ୍ମୃତାଃ । ଇତି ।

ତଟସ୍ଥ ଦେହ ବାହ୍ୟ ବୃଦ୍ଧ କି ଯୁବା ।
ଏ ଅହଙ୍କାରେ କାର୍ଯ୍ୟ ଅଛୁ କି ଅବା ଯେ ।
ଭାବସିଦ୍ଧ ଦେହ ସ୍ୱାରୋପଣରେ ।
ରହିବ ସଦା ରାଗାନୁରାଗଣରେ ଯେ । ୨୧ ।
ହସିବା ଭାଷିବାର ଶୃଣ ଶୃଦ୍ଧାଣୀ ।
ଶୃତୁଷି ଚଣ୍ଡିଶ୍ରେଷ୍ଟି କରିବା ଜାଣି ।
ଫୁଲାଇ ନାସା ମୁଖା ଭ୍ରୂରୁ ନଚାଇ ।
ଶିକ୍ଷିବ ଅଭ୍ୟାସରେ ମନ ମଣାଇ ଯେ । ୨୨ ।
ନିଜାଭିମାନ ହୋଇ ନ ଥାଏ ଦୂର ।
ଶୁଣିଲେ କୃଷ୍ଣକଥା କି ଜରଜର ଯେ ।
ତହିଁରେ ଦେହ ରତି ହୁଏ ଜନମ ।
ଏ ସାଧକମାନଙ୍କୁ ବୋଲି ଅଧମ ଯେ । ୨୩ ।

ଅସିଦ୍ଧ ଗୁରୁ ଯାର ପୂର୍ବାପରରେ ।
ଶ୍ରଦ୍ଧା ଜନ୍ମଇ ସଙ୍ଗୁ ହୃଦୟମଧ୍ୟେ ଯେ ।
ଉପାୟ କର ସାଧୁ ପାଦାଶ୍ରୟରେ ।
ନପୁଂସକ ନାରୀ ନାଗର ପ୍ରକାରେ ଯେ । ୨୪ ।

ଯଥା ; ଶ୍ରୀମଦ୍ଭାଗବତେ ।—

ସର୍ବତୋ ମନସୋଽସଙ୍ଗ ମାଦୌସଙ୍ଗଞ୍ଚସାଧୁଷୁ ।
ଦୟାଂମୈତ୍ରୀ ପ୍ରଶ୍ରୟଞ୍ଚ ଭୂତେଷ୍ୱଦ୍ଧାଯଥୋଚିତା ॥

ସଦ୍ଗୁରୁ ଇଷ୍ଟମନ୍ତ୍ର ଯେ ତ୍ୟାଗ କରଇ ।
କାର୍ଯ୍ୟାନୁରୋଧେ ନର୍କେ ପଡେ ନର୍ବର ଯେ ।
ଏଥକୁ ସିନା ପୁରାଣେ ପ୍ରମାଣ ।
କୃଷ୍ଣ ଭଜନ ଯେଣୁ ଅଟେ କାରଣ ଯେ । ୨୫ ।

ତଥାହି ପୁରାଣେ :—

ଗୁରୁତ୍ୟାଗେଭବେଦ୍ଦୁଃଖୀ, ମନ୍ତ୍ରତ୍ୟାଗୀ ଭୁ ବ୍ୟାଧିମାନ୍ ।
ଗୁରୁମନ୍ତ୍ରଦ୍ୱୟୋସ୍ତ୍ୟାଗୀ, ରୌରବଂ ନରକଂ ବ୍ରଜେତ୍ ॥

କୃଷ୍ଣ ଅଭକ୍ତ ଯେହୁ ସେ ଗୁରୁ ନୋହି ।
ତାଙ୍କୁ ତ୍ୟଜିଲେ ଦୋଷ ହୋଇବ କାହିଁ ଯେ ।
ଗୁରୁ କୃଷ୍ଣ ବୈଷ୍ଣବ ନ ଭଜେ ଯେହୁ ।
କେଉଁ ପ୍ରକାରେ ଶିଷ୍ୟ ହୋଇଲା ସେହୁ । ୨୬ ।

ତଥାହି । ଶ୍ରୀମଦ୍ଭାଗବତେ—

ଗୁରୁର୍ନ ସ ସ୍ୟାତ୍ ସ୍ୱଜନୋନସସ୍ୟାତ୍, ପିତା ନ ସ ସ୍ୟାତ୍ ଜନନୀ ନ ସା ସ୍ୟାତ୍ ।
ଦୈବଂ ନ ତତ୍ ସ୍ୟାତ୍ ନ ପତିଶ୍ଚ ସ ସ୍ୟାତ୍, ନ ମୋ ଚୟେଦ୍ୟଃ ସମୁପେତମୃତ୍ୟୁଂ ॥

କି ଭାଗ୍ୟ କି ତପସ୍ୟା ପୂର୍ବେ ମୁଁ କଲି ।
ଗୁରୁ ଶ୍ରୀ କିଶୋର ଦାସଙ୍କୁ ପାଇଲି ଯେ ।
ଏକାବେଳେକେ ଦୀକ୍ଷା ଶିକ୍ଷା ଦେଇଣ ।
ଆଶ୍ରୟ ଦେଲେ ସେ ଅଭୟଚରଣ ଯେ । ୧୭ ।
ତେବେ ମୁଁ ମୂଢ଼ ମୁଖେ କହୁଛି ମାତ୍ର ।
ସେ କୃପାକୁ ନୋହିଲି ଉତ୍ତମ ପାତ୍ର ଯେ ।
ମୁଁ କିବ ଧୂର୍ଯ୍ୟ ବ୍ରହ୍ମା ଏଥ ଗୁମାନ ।
କୃଷ୍ଣ ନ ଭଜି ବୃଥା ନେଉଛି ଦିନ ଯେ । ୧୮ ।

---

## ପଞ୍ଚମ ଛାନ୍ଦ ।

### ଅଗ୍ରଲିପ୍ସା ।

(ସ୍ୱର କେଦାର ଚକ୍ରକେଳି ବାଣୀରେ ଗାଇବ)

ଶ୍ରୋତା ବକତା ଏଥି ନାହିଁ ପୃଚ୍ଛା ।
କେବା ବୋଲିବ କାହାକୁ କହୁଛ । ୧ ।
ଗୌରାଙ୍ଗ ହାଟରେ ବହୁତ ଦ୍ରବ୍ୟ ।
କ୍ରୟ ବିକ୍ରୟ ମହାଜନ ସବ । ୨ ।
ମୁଁ ଯେ ନୂତନ କାରବାର କରେ ।
ତାଙ୍କଠାରୁ ଅଣି ଲାଭ ବଣ୍ଟଇ । ୩ ।
ବସାଉଛନ୍ତି ସୁନ୍ଦର ପସରା ।
ନଷ୍ଟାଣିଲମଣି ଏ ଅଛି ଚୋରା । ୪ ।
ବନେ ଯାଚିବା ଅବା କି ଉଚିତ ।
ହେବ ଗ୍ରାହକ ଯେ ଥପେ ଜାଣନ୍ତି । ୫ ।

ନିତ୍ୟାଶ୍ରୟ କହିବା ଯେ ଉଚିତ ।
ଅତ୍ୟାଶ୍ରୟ ଅନାଶ୍ରୟ ତ୍ୟଜିତ । ୬ ।
ରାତ୍ରି ଶେଷ ଦଣ୍ଡ ଥାଉଁ ଉଠିବ ।
ଶ୍ରୀ ଶ୍ରୀ ଗୁରୁ ଧ୍ୟାନମାନ କରିବ । ୭ ।
ଶ୍ରୀ ଶ୍ରୀ ପ୍ରଣାଳୀ କ୍ରମରେ ଚଳିବ ।
ମହାପ୍ରଭୁ ପାଦପଦ୍ମେ ମିଳିବ । ୮ ।
ଯେଉଁ ରୂପ ଯାହାର ସେ ବର୍ଣ୍ଣରେ ।
ଚିନ୍ତା କରିବ ସାଧକ ମନରେ । ୯ ।
ପୁଣି ରାଧାକୃଷ୍ଣ ନାମ କୀର୍ତ୍ତନ ।
କରୁ କରୁ ପ୍ରବେଶ ହେବ ଦିନ । ୧୦ ।
ଉଠି ବାହ୍ୟକ୍ରିୟା ଦନ୍ତଧାବନ ।
ସାର ଯଥା ବିଧାନେ କରି ସ୍ନାନ । ୧୧ ।
ରାଧାକୁଣ୍ଡ ମନ୍ତ୍ର ପଢ଼ି ବୁଡ଼ିବ ।
ଉଠି ଜଳରୁ କୂଳରେ ମିଳିବ । ୧୨ ।
ଗଙ୍ଗା ଯମୁନାଷ୍ଟକ ଏହୁ ଦୁଇ ।
ପଢ଼ି ଯମଷଷ୍ଠ୍ୟାଦି ଅବା ତହିଁ । ୧୩ ।
ତହୁଁ ଆସି ପ୍ରବେଶ ହେଲେ ପୁର ।
ତୁଳସୀଙ୍କ ମୂଳରେ ହେବ ଜାର । ୧୪ ।
ନମସ୍କାର ଭାଗବତ ବାକ୍ୟ ପଢ଼ି କରି ।
ଅନ୍ୟ କାମନା ମନରେ ନ ଧରି । ୧୫ ।

ଯନ୍ମୂଲେ ସର୍ବତୀର୍ଥାନି ଯଦଗ୍ରେ ସର୍ବଦେବତାଃ ।
ଯନ୍ମଧ୍ୟେ ସର୍ବଶାସ୍ତ୍ରାଣି ତୁଳସୀ ତାଂ ନମାମ୍ୟହଂ ।

ବନ୍ଦେ ବୃନ୍ଦାବନସ୍ଥାୟି ଦୃଷଦାପାମ୍ବୁଜାନ୍ତସ୍ୱ ।
ତ୍ୱମେବ ପୂଜିତା ଶକ୍ତି ପ୍ରସୀଦ ପରମେଶ୍ୱରି ।

ତତଃ ପ୍ରଦକ୍ଷିଣଂ ଯଥା :—

ଯାନି କାନି ଚ ପାପାନି ଜନ୍ମାନ୍ତରକୃତାନି ଚ ।
ତାନି ସର୍ବାଣି ନଶ୍ୟନ୍ତୁ ପ୍ରଦକ୍ଷିଣ ପଦେ ପଦେ ॥

ତତଃ ପ୍ରଣାମଃ ଯଥା:—

ବନ୍ଦେଽହଂ ତୁଳସୀଂ ଦେବୀଂ ପ୍ରିୟାମ୍ବୈ କେଶବସ୍ୟ ଚ ।
କୃଷ୍ଣଭକ୍ତିପ୍ରଦେ ଦେବି ସତ୍ୟବତ୍ୟୈ ନମୋ ନମଃ ॥

ତନ୍ତୁ ବୃନ୍ଦ ସାମଗ୍ରୀ ଶ୍ୟାମାଙ୍ଗନା ।
ନିର୍ମାଲ୍ୟାଦ ପାଇବ ଭାଗ୍ୟ ମାନ । ୧୬ ।
ଦେବେ ତିଳକ ଶ୍ରୀ ତୁଳସୀମୃତ୍ତିକାର ।
କର ଧେନବ ଦେହେଁ ନାମାକ୍ଷର । ୧୭ ।
ଗୋପୀଚନ୍ଦନ ଯେଣ ସେବା କର ।
ଅଥବା ଭାଗ୍ୟେ ଥୋଇ ଥାଅ ପୂର । ୧୮ ।
ଗୋପୀଚନ୍ଦନ ଅଛନ୍ତି ଯା ଘରେ ।
କୃଷ୍ଣ ସଦା ବିହାର ତହିଁ କରେ । ୧୯ ।
ଗୋପୀଚନ୍ଦନ ମାହାତ୍ମ୍ୟ କଥନେ ।
କୋଟିବାକ୍ୟ ତା କହିବ କେସନେ । ୨୦ ।
ଗୁଞ୍ଜା ତୁଳସୀ ପଦ୍ମ ଶ୍ୟାମାଙ୍ଗନା ।
ଧାତ୍ରୀ ପତ୍ରରେ ପଦ୍ମମାଳା ଯେନ । ୨୧ ।
ସୁତ ସୂତ୍ର ପଢି ଗୁଥାନ୍ତୁ କର ।
ମନ ନିର୍ମଳ କର ଏ ପ୍ରକାର । ୨୨ ।

ନାଗାଶ୍ରର ଅବ ବାସ ଓଡିଣ ।
ଧ୍ୟାନ କରିବ ଶ୍ରୀଗୁରୁଚରଣ । ୨୩ ।
କ୍ରମେ ପ୍ରଣାଳୀପ୍ରକାରେ ମିଳଣ ।
ବନ୍ଧ ଗୌର ସଙ୍ଗ ଭକ୍ତଚରଣ । ୨୪ ।
ଭାବ ଶଚୀସୁତ ନନ୍ଦନନ୍ଦନ ।
ତାଙ୍କ ପ୍ରିୟରୂପେ ତାଙ୍କ ସନ୍ନିଧାନ । ୨୫ ।
ବସ୍ତ୍ର ବେଶ ନବୀନ ଯେ ବିଧାନ ।
କର ଭାବନା ଅରମ୍ଭ ତା ମନ । ୨୬ ।
ସେହିଠାରୁ ସିଦ୍ଧରୂପେ ଯେମନ୍ତ ।
ଚିନ୍ତା କରିବ ଆପଣା ପର୍ଯ୍ୟନ୍ତ । ୨୭ ।
ଜାଣି ଏରୂପେ ଲେଖ୍ନି ଧାଇବ ।
ଗୁରୁରୂପା ପଶ୍ଚାତରେ ରହିବ । ୨୮ ।
ଯେଉଁ ସେବା ଆପଣାର ତା କର ।
ରହିଥିବ ସମସ୍ତ ଅନ୍ତର । ୨୯ ।
ରୂପମଞ୍ଜରୀ କୃପାନେବଠାରେ ।
ସେହି ସେବା କରିବ ସେ କାଳରେ । ୩୦ ।
ଯେବେ ମିଳନ କାଳ ହୋଇ ନାହିଁ ।
ଶ୍ରୀରାଧିକା ସେବା ମୂଳ ଅଟଇ । ୩୧ ।
ତାହା କରିବ କଣା ତାହାଙ୍କର ।
କୃଷ୍ଣ ପିକା ପ୍ରାଣେଶ୍ୱର ତାଙ୍କର । ୩୨ ।
ସମୟରେ ଯୁଗଳ ସେବା ହୁଏ ।
ସଦା ଶ୍ରୀରାଧିକା ସେବା ନିଶ୍ଚୟେ । ୩୩ ।

ମନ୍ତ୍ର ଧ୍ୟାନଙ୍କୁ ମୁଦ୍ରଣ ପଢ଼ି ମାତ୍ର ।
ମନ୍ତ୍ର ଜପିବ ନିଜ ଅଭିମତ । ୩୪ ।
ମନ୍ତ୍ର ଯଦ୍ୟପି ଭକ୍ତିବୃକ୍ଷମୂଳ ।
ଫଳ ଫଳଇ ଉପାସନା ଡାଳ । ୩୫ ।
ତହିଁ ପ୍ରେମଫଳ ଲାଗ ପତ୍ରରେ ।
ମୂଳ ଉଚିତ ଦୃଢ଼ କରିବାରେ । ୩୬ ।
ମୂଳ କେବଳ ବଇକୁଣ୍ଠ ପ୍ରାପ୍ତି ।
ଡାଳ ସଙ୍ଗରେ ବୃନ୍ଦାବନ ସ୍ଥିତି । ୩୭ ।
ଦଶନାମ ଗୋପାଳମନ୍ତ୍ର ଦୁଇ ।
ଅଷ୍ଟାଦଶାକ୍ଷର ଦଶାକ୍ଷର ତହିଁ । ୩୮ ।
ରାଧାମନ୍ତ୍ର ତିନ ବଳେ ପ୍ରମାଣ ।
ଯାହା ପାଇଥିବ କର ସ୍ମରଣ । ୩୯ ।
ପଞ୍ଚନାମ ଯୁଗଳ ମନ୍ତ୍ର ଭଜୁ ।
କୃଷ୍ଣମନ୍ତ୍ର ଅଥବା ମନେ ହେଜୁ । ୪୦ ।
ଗୌର ଗୋପାଳ ମନ୍ତ୍ର ଉପାସନ ।
ଗଦାଧର ମନ୍ତ୍ର ଅଛି ଯେସନ । ୪୧ ।
ଗୌର ଯୁଗଳ ମନ୍ତ୍ର ଭଜୁ ଅବା ।
ଚଇତନ୍ୟ ମନ୍ତ୍ର ଭଜୁ ଅଥବା । ୪୨ ।
କୃଷ୍ଣତାରକ ବାସୁଦେବ ମନ୍ତ୍ର ।
ଭଜ ଉପାସନା ମନ୍ତ୍ରେ ଏକ ମାତ୍ର । ୪୩ ।
ବହୁ ମନ୍ତ୍ର ଅଛି ନାନା ବିଧାନ ।
ଗ୍ରନ୍ଥ କରୁ ଯାହାର ଯେଉଁ ମନ । ୪୪ ।

ମାଏ ତନ ମନ୍ତ୍ର ତନ କରେ ।
ପ୍ରବୃତ୍ତି କର ଦଶନାମ ସାର । ୪୫
ସାଧକର ତ ପଞ୍ଚନାମ ମୂଳ ।
ସିଦ୍ଧର କାମଗାୟତ୍ରୀ କେବଳ । ୪୬ ।
କାମଗାୟତ୍ରୀ ରୂପ ରାଧାପଦ ।
ସେହି ସ୍ୱରୂପେ ସଦା ନତ୍ୟସ୍ଥିତ । ୪୭ ।

ତଥାହି :—

ଅକାରୋ ବ୍ୟାପକଶ୍ଚୈବ ଏକାରୋ ମୁରଲୀଧରଃ ।
ଲକାରୋ ରାଧିକାଦେବୀ ଅର୍ଦ୍ଧଚନ୍ଦ୍ର ବଲ୍ଲଭିତଂ ।
ଏତଦ୍ଭେଦ ରେଽବଦ୍ଧାଣ୍ଡଂ ସର୍ବାର୍ଥଂ ତ୍ରିଜଗତ୍ପଦଂ । ଘଠ ।

ତାହା ମନ୍ତ୍ର ପ୍ରକାରେ ଯେ ଭଜଇ ।
କାହା ମନରେ ଏମନ୍ତ ଅଛଇ । ୪୮ ।
କୃଷ୍ଣ ସ୍ତମ୍ଭନ ମୋହନ ଯେସନ ।
ବଶୀକରଣ ଅବ ଉଚ୍ଚାଟନ । ୪୯ ।
ମନ୍ତ୍ର କର ନାଗରକୁ ନାଗରୀ ।
ଯେଉଁ ପ୍ରକାରେ ଅପଣାର କରି । ୫୦ ।
ସେହି ପ୍ରକାରେ ଯେ ଭାବେ ଭଜଇ ।
କୃଷ୍ଣ ତାହାର ବଶୀଭୂତ ହୋଇ । ୫୧ ।
ଅପ୍ରାକୃତ କନ୍ଦର୍ପ ସେ ଅପଣ ।
ବଳେ କରନ୍ତି ତାଙ୍କୁ ଆକର୍ଷଣ । ୫୨ ।
ଏହା ବୁଝିବ ଗୁରୁର କୃପାରେ ।
ଭଜ ଗୁରୁଙ୍କ ନଶୀବାସରେ । ୫୩ ।

ଯେତେକ୍ଷେ ମନେ ଅନୁରାଗ ବଢ଼ିବ ।
ତେତେକ୍ଷେ ନାମାକ୍ଷର ବାସ ଉଢ଼ିବ । ୫୪ ।

ଜ୍ଞାନୀ ପବନ ସାଧନା ପ୍ରକାର ।
ମନ ନସୃନ କରଣ ସୁସ୍ଥିର । ୫୫ ।

ତେତେକ୍ଷେ ସିଦ୍ଧି ପ୍ରଣାଳୀ କ୍ରମେ ମିଳ ।
ଶ୍ରୀରାଧିକା ସମସ୍ତ ଦଣ୍ଡ କଲ । ୫୬ ।

ସେବା କରିବ ଶ୍ରୀରୂପ ଆଜ୍ଞାରେ ।
ଥାଇ ଗୁରୁରୂପା ଯୂଥ ପାଶରେ । ୫୭ ।

ମାନସିକ ସେବା ଏହୁ ପ୍ରକାର ।
ବାହ୍ୟ ଛାଡ଼ି ମାନସ ହେଲେ ଦୂର । ୫୮ ।

ଯେତେବେଳଯାଏ ଆରୋପଣରେ ।
ଚିତ୍ତ ରହିଥିବ ଭାଗ୍ୟବଶରେ । ୫୯ ।

ଘଣ୍ଟ ଉଠି ଶ୍ରୀମୂର୍ତ୍ତି ଦରଶନ ।
ସ୍ପରଶନ ଚରଣାମୃତ ପାନ । ୬୦ ।

ବାହ୍ୟେ ଦଣ୍ଡବତ ଗୁରୁ ବୈଷ୍ଣବେ ।
ପାଇବ ଯେ ଅଧରାମୃତ ଭାବେ । ୬୧ ।

ପୁଣି ଆପଣେ କରିବ ଭୋଜନ ।
ଯେବେ ବ୍ୟବସାୟରେ ଯିବ ଦିନ । ୬୨ ।

କୃଷ୍ଣଚନ୍ଦ୍ରା ମନରୁ ନ ଛାଡ଼ିବ ।
ହେଲେ ସମସ୍ତ ତରିବ ପଢ଼ିବ । ୬୩ ।

ତଥାହି ।—

ପରବ୍ୟସନନା ନାସ୍ତ ବ୍ୟାଗ୍ରାପି ଗୃହକର୍ମଣ ।
ଭଚେତା ସ୍ୱାଦସ୍ୱେନ କିର୍ତ୍ତନସଗ୍ରାସ୍ୱଂ । ୫୦ ।

ସନ୍ଧ୍ୟାକାଳେ ଅରଣ୍ଣ ଦରଶନ ।
ସାରି କରିବ ଯେ ନାମକୀର୍ତ୍ତନ । ୨୪ ।

ତଥାହି ।—

ତଦସ୍ମାନ୍ମନ୍ତ୍ରଣାନାଚ୍ଚ କୃତଂ ଗାର୍ତ୍ତିକ ମୁଚ୍ୟତେ ।
ଭତ୍ ପ୍ରେମରସାମ୍ମାଦୈଃ କୃଷ୍ଣଂସଙ୍କୀର୍ତ୍ତନଂ ସ୍ମୃତଂ ॥ ୫୦ ।

ପୁଣି ପୂର୍ବ୍ବପରି କରି ଭୋଜନ ।
ଝାମ୍ପି କୃଷ୍ଣଙ୍କୁ କରିବ ଶୟନ । ୨୫ ।
ହରିନାମ ସଂଖ୍ୟା ଯେ କରିଥିବ ।
କାଳ ବେଳ ନାହିଁ ସଦା ଭଜିବ । ୨୬ ।
ଏକାଦଶୀ ଜନ୍ମାଷ୍ଟମୀ ଉପବାସ ।
ଉତ୍ସବାଦିଙ୍କି କରିବ ଅବଶ୍ୟ । ୨୭ ।
ଦୋଳଯାତ୍ରା ଆଦି ଯେତେ ଉତ୍ସବ ।
ଯଥାଶକ୍ତିରେ ତା କରିବ ସବ । ୨୮ ।
ଧନ ଜନ ଦାରା ବାସ ଅପଣ ।
ହୋଇଥିବ କୃଷ୍ଣରେ ସମର୍ପଣ । ୨୯ ।

ତଥାହି ।—

ଯେ ଦାରାଗାରପୁତ୍ରାପ୍ତ ପ୍ରାଣାନ୍ ବିତ୍ତମିମଂ ପରଂ ।
ହିତ୍ୱା ମାଂ ଶରଣଂ ଯାତା କଥଂ ତାନ୍ ତ୍ୟକ୍ତୁମୁତ୍ସହେ ।

ରାଗାନୁଗା ସାଧନ ଏ ପ୍ରକାରେ ।
ବୈଧୀ ଅଙ୍ଗ ଯେ ଚର୍ଯ୍ୟ ଉବଲ୍ଲରେ ।୭୦।
ଏ ସାଧନାଦ ଥିବା ଜନ୍ମାନ୍ତରେ ।
ଭାବଭକ୍ତି ମିଳେ ଭାଗ୍ୟବଶରେ ।୭୧।
କାଳବେଳ ନାହିଁ ଆଜ୍ଞା ଶୁଣଇ ।
ବର୍ତ୍ତମାନ ପନ୍ଥ ତାହା ମଣଇ ।୭୨।
ବାତୁଲ ଯେ ତାହାର ଜ୍ଞାନ କାହିଁ ।
ନିତ୍ୟ ସିଦ୍ଧି ତା ଅନୁମାନ ସହିଁ ।୭୩।
ରାଧାକୃଷ୍ଣ ସଖା ସଖୀ କି ଦୃଷ୍ଟି ।
ସବୁ ହୋଇ ମାରଇ ତାର ମଣ ।୭୪।
ତାହା ବୁଝିବା ବସ୍ତୁ ନୁହଇ ।
ପ୍ରେମବଧାତା ସେ ଯାହା କରଇ ।୭୫।
ସ୍ତ୍ରାସ୍ତ୍ରୀଭାବେ ବଶ ବ୍ୟଭିଚାରୀ ।
ମୈତ୍ରି କରନ୍ତି ତାହା ମନ ଚେଷ୍ଟା ।୭୬।
ବାହ୍ୟ ଦଶା ଯେ ବାହ୍ୟାନ୍ତର ଦଶା ।
ଅନ୍ତର୍ଦଶା ଏ ପ୍ରକାରରେ ମିଶା ।୭୭।
ଅଷ୍ଟସାତ୍ତ୍ୱିକେ ବେଢ଼ିଣ କରନ୍ତି ।
ଧୂମାଦ୍ୟି ଭାବ କମେ ଚେଷ୍ଟେ ଜନ୍ତି ।୭୮।
ଯଦା ସ୍ତ୍ରାସ୍ତ୍ରୀ ସମାନ ଯେବେ ହୋଇ ।
ପ୍ରେମ ବୋଲି ତାହାର ନାମ କହି ।୭୯।
ମହାଭାବ ଯାଏ ଉତ୍ତରୋତ୍ତର ।
ଚଢ଼ଉଁ ପର୍ଯ୍ୟନ୍ତ ହୁଅଇ କାହାର ।୮୦।

କହୁଁ କହୁଁ ଗ୍ରନ୍ଥ ଅତି ବଢ଼ିବ ।
ପୂର୍ଣ୍ଣ ବାର୍ତ୍ତାର ସବୁ ରହି ଯିବ । ୮୧ ।
କେବା ବୋଲିବ କୃଷ୍ଣ ଅସାକ୍ଷାତେ ।
ପ୍ରୀତି କରିବ କାହାର ସଙ୍ଗତେ । ୮୨ ।
ଅଛି ଏଥିକୁ ପୁରାଣ ଉତ୍ତର ।
ଗୁରୁବିଗ୍ରହ ଏତ ସାକ୍ଷାତ୍କାର । ୮୩ ।

ଯଥା ଶ୍ରୀଭାଗବତେ ।—

ଆଚାର୍ଯ୍ୟଂ ମାଂ ବିଜାନୀୟାନ୍ନାବମନ୍ୟେତ କର୍ହିଚିତ୍ ।
ନ ମର୍ତ୍ତ୍ୟବୁଦ୍ଧ୍ୟାସୂୟେତ ସର୍ବଦେବମୟୋ ଗୁରୁଃ ।

ଯେବେ ସଂଶୟ ମନେ କର ଅବା ।
ତାହା ଦୃଷ୍ଟାନ୍ତ ଦେଇଣ କହିବା । ୮୪ ।
ପତିବ୍ରତା ସ୍ୱାମୀ ଦୂରେ ମରଣ ।
ଜାଣି ତାହା ଚିହ୍ନ କଣ୍ଠ ଯେସନ । ୮୫ ।
ଖଣ୍ଡ୍ରୀ କଠାଉ କଣ୍ଠାଇ କି ମାଳୀ ।
ଯେସନ ଅଗ୍ନି ଭିତରେ ଯାଏ ଜଳି । ୮୬ ।
ଚିହ୍ନ ବସ୍ତ୍ରସବୁ ସ୍ୱାମୀ ମିଳଇ ।
ଏରୂପେ କହିଲି ବୁଝାଇ । ୮୭ ।
ଏଣୁ ଶ୍ରୀଗୁରୁ ଶ୍ରୀମୂର୍ତ୍ତି ସାକ୍ଷାତ ।
ପ୍ରେମେ ସେବା କରିବ ଯଥେ ଚିତ୍ତ । ୮୮ ।
ଏହା କରିବା ପାଇଁ ମୂଳ ଗୁରୁ ।
ଅଟେ ଅର୍ପଣା ମନ କଳ୍ପତରୁ । ୮୯ ।
ମନଠାବେ ଅଛି ସର୍ବ କାର୍ଯ୍ୟ ।

ସର୍ବ ବିଷୟେ ମନ ଅଟେ ନିଜ । ୧୦ ।
ଅରେ ଚିତ୍ତ ତୁ ମୋତେ କୃପାକର ।
ଏହୁ ପଥେ ଗମନ ସଦାକର । ୧୧ ।
ସ୍ୱପେଣସ୍ତି ରସିକର ଚରଣେ ।
ସ୍ନେହାନୁବନ୍ଧ କର ଅନୁକ୍ଷଣେ । ୧୨ ।
କଷ୍ଟାନୀଳମଣି ଗ୍ରନ୍ଥେ ବିସ୍ତର ।
ସଦାନନ୍ଦ କବିସୂର୍ଯ୍ୟବ୍ରହ୍ମାର । ୧୩ ।

---

## ଷଷ୍ଠ ଛନ୍ଦ ।

ସଙ୍ଗିତ୍ୱା ।—ରାଗ ଭୂପାଳ, ଘୋଷି ବାଣୀ ।

ଯେହ୍ନେ ଅତି ଧନବନ୍ତ          ଯାହା ଜନା ହିତ
କରେ ତା ସଙ୍ଗେ ମେ କାର୍ଯ୍ୟ ନାହିଁ ।
ଯେବେ ବସାଇ ପୋଷିବ          ରତ୍ନେରେ ଭୂଷିବ
ଭକ୍ତଗୋଷ୍ଠୀ କଥା ତ୍ୟାଗ ଯହିଁ । ୧ ।
କନ୍ଥେ ଅବା ଝୋଳି ଧର          ଭିକ୍ଷାଟନ କର
ମୁଖେ ସ୍ମର ରାଧାପ୍ରାଣେଶ୍ୱର ।
ସ୍ୱତନ୍ତ୍ରତା ଥିବ ତହିଁ          ପରବଶ ନୋହି
କେ ଦେଉ ନ ଦେଉ କି ବିଶ୍ୱର । ୨ ।
ଯେବେ କୃଷ୍ଣ ଚିତେ ଥିବ          ଅବଶ୍ୟ ମିଳିବ
ଦେବ ଯୋଗ୍ୟ ସନ୍ନିଷ୍ଠାନ୍ନ ।
ଶଯ୍ୟା ପୁଷ୍ପ ଦାସୀ ଦାସ          ସମାନ ବିଶେଷ
କାହିଁକେ ପୂଜିବ ଭକ୍ତି ମାନ । ୩ ।

ତଥାହି :—

ଭୋଜନାଚ୍ଛାଦନେ ଚିନ୍ତାଂ ବୃଥା କୁର୍ବନ୍ତି ବୈଷ୍ଣବାଃ ।
ଯୋଽସୌ ବିଶ୍ୱମ୍ଭରୋ ଦେବୋ ସ କିଂ ଭକ୍ତାନୁପେକ୍ଷତେ ।

ବିଶ୍ୱମ୍ଭର ବିଶ୍ୱନର ସମସ୍ତ ଉଦର
ଭରନ୍ତି ମୁଁ କି ହୁଣ୍ଟି ବାହାର ।
ତହିଁ ମୋର ଅବଲମ୍ବ ମୁଁ ତାଙ୍କ କୁଟୁମ୍ବ
ଭୃତରେ ଉଚିତ ପୋଷିବାର । ୪ ।
ଯାର ମହାଅଧିକାର ରାଜ୍ୟେ ରାଜ୍ୟେଶ୍ୱର
ସେ ପଛରେ ଲୋଭ ନୋହୁ ମୋର ।
ଯେଣୁ ବିଷୟୀ ବିଷର ଅଟଇ ଭଣ୍ଡାର
ଶ୍ରବଣେ ଦର୍ଶନେ ଜ୍ଞାନ ଦୂର । ୫ ।
ବିଷ ଖାଇଲେ ଶରୀର ଯିବ ପୁନର୍ବାର
ଜନ୍ମିଲେ ଅବା ଭଜିବ ହର ।
ଯାହା ଶ୍ରବଣେ ଦର୍ଶନେ ମନେ ଆଚରଣେ
ହେବ ନର୍କପାତେ ଅଧିକାରୀ । ୬ ।

ତଥାହି ଶ୍ରୀଚୈତନ୍ୟଚନ୍ଦ୍ରସ୍ୟ :—

ନିଷ୍କିଞ୍ଚନସ୍ୟ ଭଗବଦ୍ଭଜନୋନ୍ମୁଖସ୍ୟ
ପାରଂ ପରଂ ଜିଗମିଷୋର୍ଭବସାଗରସ୍ୟ ।
ସନ୍ଦର୍ଶନଂ ବିଷୟିଣାମଥଯୋଷିତାଂ ଚ
ହା ହନ୍ତ ହନ୍ତ ବିଷଭକ୍ଷଣତୋଽପ୍ୟସାଧୁ ।

ପୁନଃ ଯାତ୍ରେ ।—

ଆଲାପାତ୍ ଗାତ୍ରସଂସ୍ପର୍ଶାନ୍ନିଶ୍ୱାସାତ୍ସହଭୋଜନାତ୍ ।
ସଞ୍ଚରନ୍ତୀହ ପାପାନି ତୈଳବିନ୍ଦୁରିବାମ୍ଭସି ॥

ମହାପଣ୍ଡିତ ପଣ୍ଡିତ        ଆଳାପ ଉକତ
ନୋହନ୍ତି କଦା ଏକାକାର ।
ମନେ କୁତ୍ସିତ ଯୁବତୀ        କାମନାରେ ଚିନ୍ତ
ସୁନ୍ଦରଙ୍କୁ ବୋଲେ ନମସ୍କାର । ୭ ।

ତଥାହି ।—

ଅନନ୍ତରଂ ବଳଂ ମତ୍ତ୍ୱା ବ୍ୟାଡ଼ବୋ ଗୁଣଧୌମ୍ୟଯୋଃ ।
ନ ସନ୍ତ୍ୟନ୍ୟେଷ୍ଵବୁଦ୍ଧାନାଂ ତାସ୍ତାଯେ ଦିବ୍ୟଦର୍ଶିନାଂ ।

ଯେହ୍ନୁ ଶୃଙ୍ଗାର ମୂରତି        ନବଘନକାନ୍ତି
କୋଟି ମନମଥ ମନ ମନ୍ଥେ ।
ଶ୍ରୁତିମାନେ ମୁନି ଜନ        ତପ ତାପେ ଧନ
ଜାଣନ୍ତି ଶୁକ ସନକ ସନ୍ଥେ । ୮ ।
ବଡ଼ବଡ଼ ଅଧିକାରୀ        ମହନ୍ତଙ୍କୁ ହର
ଦଣ୍ଡବତ କୃଷ୍ଣଭକ୍ତି ସେହ୍ନୁ ।
ଯେବେ ବ୍ରଜ ପ୍ରେମରସ        ନାହିଁ ସୁବାସ
ସେବି ତାଙ୍କ ଅଜ୍ଞା ଦୂରେ ରହୁ । ୯ ।
ଯେବେ ମୋତେ ଅନାଦର        କରବେ ବିସ୍ତର
ନାହିଁ ଇଷ୍ଟ ବନ୍ଧୁ ମୋର ସେତ ।
ବେଦ ସବୁବେ ନିର୍ଗୁଣ        ହେଲେ କି କାରଣ
ଅନ୍ତର୍ଯ୍ୟାମୀ ତାଙ୍କ ହୃଦେ ସ୍ଥିତ । ୧୦ ।

ତଥାହି ।—

ସାଧବୋ ହୃଦୟଂ ମହ୍ୟଂ ସାଧୂନାଂ ହୃଦୟଂ ତ୍ୱହଂ ।
ମଦନ୍ୟତ୍ତେ ନ ଜାନନ୍ତି ନାହଂ ତେଭ୍ୟୋ ମନାଗପି ॥

ଯେହୁ ବୈଷ୍ଣବ ଗୋସାଁଇ    ଏଙ୍କୁ ହୁଇ ନାହି
କୃଷ୍ଣଭକ୍ତରୂପେ ଅବା ଭାବ ।
ଯାହା ଭାଗ୍ୟ ଉଦେ ଯେତେ ତାହା ହୃଦେ ତେତେ
କଳା ଯେନ ବଢେ ତାହାଙ୍କର । ୧୧ ।

ତଥାହି ଗୀତାୟାଂ ।—

ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂ ସ୍ତଥୈବ ଭଜାମ୍ୟହଂ ।
ମମବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ ।

କୃଷ୍ଣ ଆଜ୍ଞା ଅଛି ଏହି    ଯେ ଯେମନ୍ତେ ଭଜଇ
ମୁଁ ତାଙ୍କୁ ଭଜଇ ସେହି ମତ ।
ଯେହୁ ନିଷ୍ଠାରେ ଭଜନ୍ତି    ଅନ୍ୟ ନ ଜାଣନ୍ତି
ତା ହୃଦେ ସମ୍ପୂର୍ଣ୍ଣ ଶକ୍ତି ସ୍ଥିତ । ୧୨ ।
ଯେହୁ ସିଦ୍ଧିକି ଦେଖାଇ    କରଣୀ କଟାଇ
ପ୍ରତିଷ୍ଠା ପାଇ ପୂଜନ୍ତି ଲୋକେ ।
ତାଙ୍କୁ ନିନ୍ଦା ସ୍ତୁତି କବା    ଆପଣେ ରହିବା
ଦୂରରୁ ସେ ଲେଖା ବଡଲୋକେ । ୧୩ ।
ମୋତେହା ବୈଷ୍ଣବ ଗୋସାଇଁ    କରୁଣୀତ ଏହି
ରାଧାକୃଷ୍ଣ ନାମ ମୁଖେ ଗାନ ।
ଧୈର୍ଯ୍ୟ ହୋଇଥାଇ ହୃଦ୍    ନେତ୍ରେ ଅଶ୍ରୁଧାର
ଅଙ୍ଗରେ ସାତ୍ତ୍ୱିକ ଚିହ୍ନମାନ । ୧୪ ।
ଶ୍ରଦ୍ଧାଠାରୁ ପ୍ରେମ ଯାଏ    ବଡଦାଣ୍ଡ ଶୋଭେ
ଏ ପଥେ ଗମନ ଯାହାଙ୍କର ।

କ୍ଷାନ୍ତି ଆଦି ଅନୁଭାବ     ସଙ୍ଗ ଯାର ଲଭ୍ୟ
ଶରଣ ମୁଁ ତାଙ୍କ ଶ୍ରୀପଦ୍ମର । ୧୫ ।

ଆଦୌ ଶ୍ରଦ୍ଧା ତତଃ ସାଧୁସଙ୍ଗୋଽଥ ଭଜନକ୍ରିୟା ।
ତତୋଽନର୍ଥନିବୃତ୍ତିଃ ସ୍ୟାତ୍ତତୋ ନିଷ୍ଠା ରୁଚିସ୍ତତଃ ॥
ଅଥାସକ୍ତିସ୍ତତୋ ଭାବସ୍ତତଃ ପ୍ରେମାଭ୍ୟୁଦଞ୍ଚତି ।
ସାଧକାନାମୟଂ ପ୍ରେମ୍ଣଃ ପ୍ରାଦୁର୍ଭାବେ ଭବେତ୍କ୍ରମଃ ।

ପୁନଃ—ଅନୁଭାବ-ଯଥା—

କ୍ଷାନ୍ତିରବ୍ୟର୍ଥକାଳତ୍ୱଂ ବିରକ୍ତିର୍ମାନଶୂନ୍ୟତା ।
ଆଶାବନ୍ଧଃ ସମୁତ୍କଣ୍ଠା ନାମଗାନେ ସଦା ରୁଚିଃ ॥
ଆସକ୍ତିସ୍ତଦ୍‌ଗୁଣାଖ୍ୟାନେ ପ୍ରୀତିସ୍ତଦ୍‌ବସତିସ୍ଥଳେ ।
ଇତ୍ୟାଦୟୋଽନୁଭାବାଃ ସ୍ୟୁର୍ଜାତଭାବାଙ୍କୁରେ ଜନେ ॥

ବର୍ଣ୍ଣାଶ୍ରମଭେଦ ତହୁଁ     ମୋ ବିଗ୍ରହ ନାହିଁ
ଏମନ୍ତ ଯେ ଅଟେ ପ୍ରଭୁ ମୋର ।
ତାଙ୍କ କୃପାକୁ ଇଚ୍ଛଇ     ଅଭାଗ୍ୟ ମୁଁ କାହିଁ
ପାଇବି ଦର୍ଶନ ତାହାଙ୍କର । ୧୬ ।
ସେ ଯେ ଶ୍ରୀରାଧାଚରଣ     ଦାସ ନାମେ ପ୍ରାଣ-
ବନ୍ଧୁ ମୋହର ସେ ଗଲେ କାହିଁ ।
ଯାଙ୍କ ସଙ୍ଗୁ ନିଷ୍ଠା ମୋର     ଯେ ଦେବତାନ୍ତର
ଭକ୍ତି ଛଡ଼ାଇଲେ ହୃଦୁ ବନ୍ଧୁ । ୧୭ ।
ଏରୂପର ଯାର ଧନ     ଉପାର୍ଜନେ ମନ
ଲୋକଙ୍କୁ ଭଣ୍ଡିବା ପାଇଁ କର ।
ମିଛେ ଭାବେ ନାଚେ ଗଡ଼େ     ଧର୍ମ କୋଳ ଲୋଡ଼େ
ସେ ଭାବକୁ ଯାଉ ବଳିହାର । ୧୮ ।

ଅତେବ ସାଧୁ କୃପା କର　　　ଦର୍ଶନ ଦାପର
　　ଧାଅ କି ନା ଏ ପତିତ ଜନେ ।
କୃଷ୍ଣ ଆପେ ଦେଖା ଦେଲେ　　କି କାର୍ଯ୍ୟ ବନ୍ଧଂରେ
　　ରହି ନ ପାରିବେ ଘଣେ ମନେ । ୧୯ ।

ପାଇଲେକ ତୁମ୍ଭ ସଙ୍ଗ　　　ମୋ ହୃଦେ ନିରଙ୍ଗ—
　　ସୁନ୍ଦର ନାଚିବେ ଅହର୍ନିଶେ ।
ଚୋରେ ବିଗ୍ରହଲ୍ଲ ମୁଦ୍ଧଁ　　　ଏଥି ବିନା ନାହିଁ
　　ଉପାୟ ପ୍ରେମ ପ୍ରାପତ ଆଶେ । ୨୦ ।

ନିଷ୍କାମାଜଳମନ୍ତ୍ରି ଗୀତ　　　ସ୍ୱଜନେ କଣ୍ଠସ୍ଥ
　　କର ତ୍ୟାଗ ହେବ ଭବରୋଗ ।
ସଦାନନ୍ଦ କବିସୂର୍ଯ୍ୟ　　　ବ୍ରହ୍ମାର ଅଧୈର୍ଯ୍ୟ
　　ନ ହେଲ ବିଧାତା ସାଧୁସଙ୍ଗ । ୨୧ ।

---

## ସପ୍ତମ ଛାନ୍ଦ ।

**ଏକାନ୍ତ ଭକ୍ତିନିଷ୍ଠା ।—ରାଗ ବଙ୍ଗଳା, ଅଷ୍ଟାଦଶାକ୍ଷ ବାଣୀ ।**

ଅମୁକ ଦେବତା ବୋଲିଣ ଥୋକେ ।
କାମନାରେ ପୂଜୁଥାନ୍ତି ଯେ ଲୋକେ ।
ଜନଙ୍କୁ ଦେବେ ଶ୍ରେଷ୍ଠ ଶକ୍ତି ଯେଣୁ ।
ତାଙ୍କ ମନୋରଥ ଦିଅନ୍ତି ତେଣୁ ।
ରୋଗୀ ରୋଗ ନାଶେ । ଦରିଦ୍ର ଧନ ଲଭନ୍ତି ପୌରୁଷେ । ୧ ।
କୃଷ୍ଣଆଶ୍ରୟ ଅମ୍ଭେମାନେ ଯେତେ ।

ବ୍ୟାଧି ହୋଇଲେ କେଉଁଣି ମରେ ।
ଦରିଦ୍ର ହୋଇ ନ ମିଳିଲେ ଅନ୍ନ ।
ଋଦ୍ଧଙ୍କୁ ଅବା କେଉଁ ଚିନ୍ତା ମନ ।
କେତେ ଧନ କଥା । ଦୁଃଖ ସୁଖ କେତେ ଜନ୍ମ ଏ ବୃଥା ।୨।
ଜନ୍ମ ମରଣ ଅନ୍ତ ଯେତେ କାଳ ।
ଦୁଃଖ ସୁଖ ଦୂର ଏହାର ମୂଳ ।
କୃଷ୍ଣ ପ୍ରାପ୍ତି ହେଲେ ଏ ସିନା ଯିବ ।
ପରମାନନ୍ଦେ ପୂର୍ଣ୍ଣ ହୋଇଥିବ ।
ସେହୁଁ ରେ ଅଛେ । ସୁଖସାର ଯହୁଁ ଚରଣେ ଖଟେ । ୩ ।
କେ ଭଜେ କାଳୀ କେ ଭଜେ କପାଳୀ ।
କେ ଭଜେ ବନମାଳୀ ନାକପାଳୀ ।
ଅମ୍ଭର ଏହି ନିଷ୍ଠା ନିର୍ଧାର ।
ଶ୍ରୀରାଧିକା ମୁଖଚନ୍ଦ୍ର ଚକୋର ।
ଯା ଚନ୍ଦ୍ରବଦନେ । ତୁମ୍ଭେ ସେ ଯଶୋଦାକିଶୋର ମନେ । ୪ ।

ତଥାହି ।—

ନ କାଳୀ କପାଳୀ ନ ବା ବନମାଳୀ—
ନ ବା ନାକପାଳୀ ମୟା ସେବ୍ୟତେ ସ୍ମ ।
ମୁଦେ ଚନ୍ଦ୍ରମଦ୍‌ବକ୍ତ୍ରବାଦୃକ୍‌ଚକୋରେ,
ଯଶୋଦାକିଶୋରେ ମଦୀୟୋଽନୁରକ୍ତଃ ।

କେବା ଭଜନ୍ତି ଉମା ମହେଶ୍ୱର ।
ଲକ୍ଷ୍ମୀ ନାରାୟଣ ଭଜେ କେ ନର ।
କେ ପରମାତ୍ମା ବ୍ରହ୍ମ ବୋଲି ଭଜେ ।

ଆମ୍ଭର କେବଳ ନୋହୁ ସେହୁ କାର୍ଯ୍ୟ ।
ରାଧା ଦାମୋଦର । ପାଦପଙ୍କେ ଚିତ୍ତ ଦେଇ ଭ୍ରମର । ୭ ।

ତଥାହି ।—

ଉମାପଦେଶ୍ଚ ଗୌ କେଚନ୍ତ୍ରୀନାରଦ୍ଧଣୌ ପତେ ।
ସେ ଭଜନ୍ତ ଭଜନ୍ତୁ ତେ ରାଧାଦାମୋଦରୌ ବୟଂ ॥

ଭିନ୍ନ ଦେବତା ହୁଅନ୍ତୁ ନୃତ୍ନ ।
ବ୍ରହ୍ମ ସେ ଅଥବା ନ୍ୟାଦନ୍ତୁ କନ୍ତୁ ।
ଉଣା ଅଧିକରେ ବିଚାର ନାହିଁ ।
ସେ ଅମ୍ଭ ପ୍ରାଣନାଥ ନିଷ୍ଠା ଏହି ।
ସ୍ୱାମୀ ଗୁଣ ଦୋଷ । ଦୋଷୃଷ ସିନା ଦେଖନ୍ତି ମାନସ । ୭ ।
ପତ୍ନୀର ପତିବ୍ରତାଧର୍ମ୍ମ ମୂଳ ।
ସ୍ୱଜା ଭାର୍ଯ୍ୟା ସେ ହୋଇବ କେବଳ ।
ଦାସ ଦାସୀ କାହିଁ ପାଇଁ ନୋହିବ ।
ଏରୂପେ ଉଣା ଯେବେ ସେ ମାଧବ ।
ଅମ୍ଭ ପ୍ରାଣପତି । ତାଙ୍କ ଚରଣ ବିନୁ ନାହିଁ ଗତି । ୭ ।

ତଥାହି—

କୃଷ୍ଣୋଽସ୍ମାକଂ ଦୈବତଂ ବ୍ରହ୍ମବନ୍ଧୋ,
ବ୍ରହ୍ମୈବ୍ୟୋରସ୍ତୁଃ ନୈବ ତନ୍ତା ।
ଦାସୋ ଭର୍ତ୍ତା ବା ପତିଃ ସେବ୍ୟଏବଃ
ପତ୍ନ୍ୟାଃ ପାତିବ୍ରତ୍ୟ ମେକଂ ହି ଧର୍ମଃ । ୧୦ ।

ବ୍ରଜଇଶ୍ୱର ପିତା ଯାହାଙ୍କର ।
ଚନ୍ଦ୍ରେ କରେ ଧଇଲେ ଗିରିବର ।

ଶ୍ରୀରାଧିକା ପ୍ରିୟା ଯାହାର ଯେ ।
ଶ୍ରୀଦାମ ସୁବଳାଦ ସଖା ଯହିଁ ।
ବଳରାମ ଭ୍ରାତ । ମୟୂରପୁଚ୍ଛ ଚୂଳ ଅଳଙ୍କାର । ୮ ।

ତଥାହି ।—

ଗୋପଗ୍ରୌ ଠିତବୀ ବ୍ରଜତଧେନଃ ଶ୍ରୀରାଧିକା ପ୍ରେୟସୀ
ଶ୍ରୀଦାମଃ ସୁବଳାଦୟସ୍ତ ସୁହୃଦୋ ନନ୍ଦାତ୍ମଜଃ ପୂର୍ବଜଃ ।
ବେଣୋଦ୍ଗୀତଂ ମଡକୃତଂ ଶିଖିତଦଂ ଜଦୀଶ୍ୱରେ ନଦଙ୍ଗେ
ବୃନ୍ଦାରଣ୍ୟବିଚିତ୍ରଂ ଚରଣୟୋ ଭାବାନି ନାରୀଂ ପ୍ରଭୁଂ ॥ ଉ୭ ॥

ବଂଶୀ ବଜାନ୍ତ ଯେ ନିରନ୍ତ ହୋଇ ।
ଜଳଯେ ନାହିଁ ବଳିମେ ଅନାଇ ।
ଶୁକ୍ର ନାରଦ ସେହି ସମୟରୁ ।
ଅଙ୍ଗୁଳଠାରେ ଡ଼ାକନ୍ତି କୋଳକୁ ।
ମନମଥ ବୃନ୍ଦ । ମନ ମନ୍ତ୍ରେ ବାମାଙ୍ଗେ ଦ୍ରବଇ । ୯ ।
ପୁରୁଷ ହୁଏ ଯୁବତୀ ଯାଳନ୍ତି ।
କେତେ ଅଗନ୍ତୁ କଢ଼ାଇଲେ ବାଟ ।
ଶକ୍ତିମନ୍ତ୍ରେ ଅଙ୍ଗ ରୂପ ଧରଣ ।
ଗୋପୀ ଅନୁଗତେ ସେବ ଚରଣ ।
ଆନନ୍ଦେ ମଜ୍ଜିତ । ବାହ୍ୟରୂପେ ଅନ୍ୟ ଲୋକେ ବଦତ । ୧୦ ।
ଦଣ୍ଡକାରଣ୍ୟ ମୂନି ପୂର୍ବକାଳେ ।
ଗୋପାଳ ଉପାସନା କରୁଥିଲେ ।
ରାମରୂପ ଦରଶନରୁ ଜାର ।
ସେ ସଙ୍ଗ ଥିଲା ହୋଇଲା ଅଙ୍କୁର ।

ତରେ ଫଳ ଫଳ । ଗୋପୀ ସଙ୍ଗତେ ପାଇଲେ ଗୋପାଳ । ୧୧ ।

ସେ ରସ ଅପଣେ ପ୍ରଭୁ ସ୍ୱାଦିହ ।
ଅପଣା ରୂପ ଆପେ ଦେଖି ମୋହ ।
ଶ୍ରୀରାଧିକା ହେବା କାମନା କଲେ ।
ସେ ଭାବ ଗ୍ରହଣ କରି ଭଜିଲେ ।
ଗୌରବର୍ଣ୍ଣ ଧରି । ହା କୃଷ୍ଣ ବୋଲି ଜଣା ଦେଲ ସ୍ଫୁରି । ୧୨ ।

ତଥାହି ।—

ଅପରିକଳିତପୂର୍ବଃ କସ୍ତମତ୍କାରକାରୀ
ସ୍ଫୁରତି ମମ ଗରୀୟାନେଷ ମାଧୁର୍ଯ୍ୟପୂରଃ ।
ଅୟମହମପି ହନ୍ତ ପ୍ରେକ୍ଷ୍ୟ ଯଂ ଲୁବ୍ଧଚେତାଃ
ସରଭସମୁପଭୋକ୍ତୁଂ କାମୟେ ରାଧିକେବ ॥

ବିରହେ ବ୍ୟାକୁଳ ବିହ୍ୱଳ ଚିତ୍ତ ।
ଆପେ ଅପଣାକୁ ଭଜେ ଏ ରୀତ ।
ପ୍ରେମର ଅଟେ ଏମନ୍ତ ଲକ୍ଷଣ ।
ବିଷ ଅମୃତ ଏକତ୍ର ମିଳନ ।
ପରମାହ୍ଲାଦକ । ବାହ୍ୟ ଜୋଡ଼େ ମନ ଆନନ୍ଦ ଏକ । ୧୩ ।

ଏ ସ୍ୱାଦୁକଣ୍ଟକ ପ୍ରାପ୍ତି ଜନର ।
ସଂସାର ଶୋକ ସନ୍ତାପେ କି ଡର ।
ହରି ଯେବେ ସ୍ଫୁରୁଥିବେ ମନରେ ।
କି ଦୁଃଖ ହେବ ଅନ୍ୟ ଯାତନାରେ ।
କୃଷ୍ଣ ଗନ୍ଧ ନାହିଁ । ତେବେ ସ୍ୱର୍ଗେ ଥିଲେ ନର୍କ ମଣଇ । ୧୪ ।

କବିପୂର୍ଯ୍ୟ ବ୍ରହ୍ମା ତୃଣଦଶନ ।

ହୋଇ ମାଗେ ଅତହ୍ କୃଷ୍ଣଚୈତନ୍ୟ ।
ତବ ବରହ୍ନ ଅସହ୍ୟନ୍ତୁ କର ।
ଶ୍ରୀରାଧା ପ୍ରକୃଷ ରୂପ ଯେ ଧର ।
ପ୍ରିୟ ଗଦାଧର ।' ସେ ପାଦପଦ୍ମେ ରହୁ ଚତ୍ତ ମୋର । ୧୫ ।

---

ଅଷ୍ଟମଗନ୍ଧ ।

ଧାମକଶ୍ରୀ ।—ଭ.ଗ ଦୈର୍ଣ ।

କୃଷ୍ଣର ଅଶେଷ ଧାମ   କେ ହେବ କହିବା କ୍ଷମ
ଧାମ ଭେଦ ନାମ ଭେଦେ ସେ ଦଶ୍ଶରର ।
ଲକ୍ଷ୍ମୀ ନାରାୟଣ କାହିଁ   ରୁକ୍ମଣୀ ବାସୁଦେବଙ୍କ
ସୀତା ରାମ କେଉଁଠାରେ ପାବଣ୍ଡ ହର ।
ଏହ ଅନ୍ୟରୂପରେ ଲୀଳା ।
ପ୍ରକାଶ ବଳାପ ଅଂଶ ଆବେଶ କଳା । ୧ ।
କୃଷ୍ଣ ସ୍ୱୟଂ ଭଗବାନ   ଯେହୁ ବ୍ରଜେନ୍ଦ୍ରନନ୍ଦନ
ଶ୍ରୀ ଗୋଲୋକବୃନ୍ଦାବନେ ନିତ୍ୟ ବହାର ।
କାହିଁ ସଦା ବୃନ୍ଦା ସ୍ନେହ   ପଲକ ପତନ ନୋହ
କାହିଁ ପରକୀୟା ବ୍ୟାଜେ ବୃନ୍ଦ ରସର ।
ଯୋଗମାୟା ପୂର୍ବ ଅଙ୍କରେ ।
କରେନ୍ତି କଷ୍ଟେ ବଧାତା ମେଳା ଏ ସେଠାରେ । ୨ ।
ଏ କଥା ସିଦ୍ଧାନ୍ତ ପାଇଁ   ଏଠାରେ ସମୟ ନାହିଁ
ନ ବୁଝିବେ ଶୀଘ୍ର କେହି ହେବ ବସ୍ତୃର ।

ଶ୍ରୀକୃଷ୍ଣ ତନୁ ସମାନ ଜାଣ ଏବେ ବୃନ୍ଦାବନ
ସର୍ବତ୍ର ବ୍ୟାପି ବ୍ୟାପକ ଅଚିନ୍ତ୍ୟସ୍ଥନ ।
ଭୂମି ଚିନ୍ତାମଣି ଯାହାର ।
ବୃକ୍ଷେ କଳ୍ପଦ୍ରୁମ ପକ୍ଷୀ ପଣ୍ଡିତବର । ୩ ।
କଥନ ଗାନ ବିଧାନ ଗମନ ନାଟ ନର୍ତ୍ତନ
ଗାବ କାମଧେନୁ କୋଟି ଲକ୍ଷ୍ମୀ ବିହାର ।
ଚନ୍ଦ୍ରରଶ୍ମି କୋଟି ଶୋଭା ଏକେକ ଦେଶେ ପ୍ରସ୍ଥିତ
ଲକ୍ଷାୟୁତ କୋଟି ବୈକୁଣ୍ଠାଦି ପୁର ।
ଅପଣ୍ଡିତ ମୂର୍ଖ ନ ବୁଝେ ।
ପ୍ରାକୃତ ଅପ୍ରାକୃତ ଯେ ସହଜେ । ୪ ।

ତଥାହି, ବ୍ରହ୍ମସଂହିତାୟାଂ ।—

ଶ୍ରିୟଃ କାନ୍ତାଃ କାନ୍ତଃ ପରମପୁରୁଷଃ କଳ୍ପତରବୋ
ଦ୍ରୁମାଭୂମିଶ୍ଚିନ୍ତାମଣିଗଣମୟୀ ତୋୟମମୃତଂ ।
କଥା ଗାନଂ ନାଟ୍ୟଂ ଗମନମପି ବଂଶୀ ପ୍ରିୟସଖୀ
ସ୍ଥିତାନନ୍ଦର୍ଜ୍ୟୋତିଃପରମପିତଦାସ୍ୱାଦ୍ୟମପିଚ ॥ ଇତି ।

ଶ୍ରୀବୃନ୍ଦାବନର ଗୁଣ କହୁଅଛି ଶୋଭା ଶୁଣ
କଳା ଅଂଶ ମହାବସ୍ତୁ ଅଛି ଯାହାର ।
ସେ କୃଷ୍ଣର ଗୋଚାରଣ ଗୋପବାଳଙ୍କ ଭୂଷଣ
ମୟୂରମୁକୁଟ କରେ ବଂଶୀ ବିଷାଣ ।
ବନଚର ନଟାକୃତିରେ ।
ନାଗ ପୁଂସ ବେଶ ଭଙ୍ଗୀ ମାନସ ହରେ । ୫ ।
ଗୋପୀଙ୍କି ଦେଖିବା ପାଇଁ ଭ୍ରମେ ସ୍ୱୈର ପଶୁ ହୋଇ

ଭାଗ୍ୟେ ପାଇଁ କର ଯୋଡ଼ କଣ୍ଠାଗ୍ରେ ଠାରେ ।
ଛଳେ କରୁଁ ଉରସ୍ୱାର ଦୈନ୍ୟ କହେ ବାରମ୍ବାର
ବନ୍ଧୁରେ ଶରଣ ନଷ୍ଟେ ଯେନ ମୋହରେ ।
ଭାସିଲନ୍ତି ଦୁଃଖସାଗର ।
କୃପାନାବ ଦେଇ ମୋତେ ଉଦ୍ଧର ଧର । ୬ ।
ବ୍ରହ୍ମା ଉଦ୍ଧବର ଚିନ୍ତା    ହେବା ପାଇଁ ଗୁଳ୍ମ ଲତା
ସେ ବୃନ୍ଦାବନରେ ସଦା ରହୁ ମୋ ମନ ।
ବୈକୁଣ୍ଠରେ ବିଷ୍ଣୁ କଥା    ନ ଶୁଣୁ କର୍ଣ୍ଣ ସର୍ବଥା
ଶ୍ରୋତବ୍ୟ ହେଉ ସେ ସ୍ଥାନ ଗ୍ରାମ୍ୟବଚନ ।
ଯେ ବଧୀତା ତୃଣଦଶନେ ।
ମାଗୁଛି ଦେହାନ୍ତେ ଜନ୍ମ ଦେବ ସେ ସ୍ଥାନେ । ୭ ।

ଯଥା ଶ୍ରୀ ଭାଗବତେ ।—

ତତସ୍ତୁ ମେ ନାଥ ମଦ୍ଭବଦ୍ଭିବା
ଭବିଂନ ବାନ୍ୟନ ଅବାଢିକସ୍ତାଂ ।
ଯେନାହ୍ମ ମେବୋଽଠ ଭବନ୍ଦନାଥଂ
ହ୍ୱା ନଃଶବେ ତବ ଚ ପାଦସ୍ୱତଂ ॥

ଉନନ୍ଦୂଦ୍ଧବବାକ୍ୟଂ ।—

ଆସାମହୋ ଚରଣରେଣୁଜୁଷାମହଂ ସ୍ୟାଂ
ବୃନ୍ଦାବନେ କିମପି ଗୁଳ୍ମଲତୌଷଧୀନାଂ ।
ଯା ଦୁସ୍ତ୍ୟଜଂ ସ୍ୱଜନମାର୍ଯ୍ୟପଥଂ ଚ ହିତ୍ୱା
ଭେଜୁର୍ମୁକୁନ୍ଦପଦବୀଂ ଶ୍ରୁତିଭିର୍ବିମୃଗ୍ୟାଂ ॥ ଇତି ।

ସ୍ଥାବର କରନ୍ତୁ ଯେବେ    କଦମ୍ବ ନକଟେ ହେବେ
ଜଙ୍ଗମ କଲେ ଶ୍ରୀରାଧା ସେବା କାରଣେ ।

ଗୀଠ କଲେ କ ପ୍ରକାରେ ଧେନୁ କର ଯାବଟରେ
ଘରଙ୍ଗ କଲେତ ପାସ୍ତ୍ର କର ବନରେ ।
ଯଶସ୍ୱୃତ ହୋଇଲୁ କହ ।
ତୁମ୍ଭର ଏ ବ୍ରଜେ ଅଧିକାର ବା କାହିଁ । ୮ ।

ଯୋଗମାୟା ଭଗବତୀ କୃଷ୍ଣରସେ ସଦାଶକ୍ତି
ତାଙ୍କ ଅଙ୍କରେ ତାଙ୍କ ଅଦୃଷ୍ଟ ବିଧାତା ।
ଯା କରନ୍ତି ସେ ହୁଅଇ ମୋତେ କୃପା କର ତହିଁ
ଜନ୍ମ ଦଅନ୍ତେ କି ଏ ମନୋରଥ ଲତା ।
ଅବଶ୍ୟତ ଫଳନ୍ତା ଫଳ ।
ଛୁଅନ୍ତି ଶ୍ରୀରାଧାକୃଷ୍ଣ ପାଦକମଳ । ୯ ।

କୋଟି କୋଟି ଚନ୍ଦ୍ରାମନ୍ତ୍ରି ନିନ୍ଦୁ ବା ତ କୁ ନ ଗଣି
ଏହ ବାହ୍ୟନେହେ ଦେଖା ଦେଲେହେଁ ହର ।
କି ହେବ ମୋର ତହିଁରେ ଶ୍ରୀବୃନ୍ଦାବନ ଧୂଳରେ
ଧୂସର ହୋଇବ କି ଶରୀର କପର ।
କବିସୂର୍ଯ୍ୟବ୍ରହ୍ମା ରଚିତ ।
ମଣ୍ଡୁଳମଣି ନାମେ ବାଡୁଲଗୀତ । ୧୦ ।



## ନବମ ଛନ୍ଦ ।

ଚକ୍ରକେଳି ।—ରାଗ କାମୋଦ, ତଂସହିତ ବାଣୀ ।

ଶୁଣ ରେ ତତ୍ତ୍ୱ ମୋର କର ଏହି ବିଚାର
କେବଳ ଈଶ୍ୱର ସେ ଏକ ।
ଯେତେ ଏ ସ୍ୱଗ୍ବସ୍ୱର ନର ଜୀବ ମାତର
ତଥାପି ତୋତେ ସେ ଅଧିକ ରେ । ଅରେ ମନ ।
ନ୍ୟୂନାଧିକ ଅଛି ଶକ୍ତିରେ ।
ନ ନିନ୍ଦ ନ ବନ୍ଦ ବେଲ୍ଲରେ ।
କେବଳ ସର୍ବାଶ୍ରୟ ନିତ୍ୟ ତତ୍ତ୍ୱ ନିଷ୍ଠୟ
କୃଷ୍ଣଙ୍କୁ ଭଜ ନିରନ୍ତରେ ରେ । ଅରେ ମନ । ୧ ।
ମହାଦେବନନ୍ଦନ ଗଣେଶ ଏଥି ଭିନ୍ନ
ଅଗ୍ରପୂଜ୍ୟ ଯେ ଦଇବରେ ।
ତାହାଙ୍କ ପାଦେ ପଡ଼ି ମାଗିବ କର ଯୋଡ଼ି
ବିଘ୍ନ ନ ଦେବ ମୋ ଭକ୍ତିରେ ହେ । ଅରେ ମନ ।
ଶିବ ଯେ ବିଷ୍ଣୁଙ୍କେ ଅଭିନ୍ନ ।
ଗୁଣାବତାରେ ସେ ପ୍ରଧାନ ।
ବଇଷ୍ଣବ ଅଗ୍ରଣୀ ଜଗତଗୁରୁ ଜାଣି
ଦେଖିଲେ ବନ୍ଦିବୁ ଚରଣେ ରେ । ଅରେ ମନ । ୨ ।
ପ୍ରକୃତି ଭଗବତୀ କୃଷ୍ଣ ତାମସଶକ୍ତି
ଯାଙ୍କରେ କରନ୍ତି ସଂସାର ।
ସକଳ ହୃଦେ ଥାଇ ଅହଙ୍କାର ଜନ୍ମାଇ
ମୋ ଦାସ ସୁତ ବିତ୍ତ ଘର ରେ । ଅରେ ମନ ।

ଘନ ପଗ୍ରନ୍ଥ ଘୋଷନ୍ତି   ଈଶ୍ୱର ତତ୍ତ୍ୱ ନ ଦେଖାନ୍ତି ।
କେତେବେଳରେ ନେଇ
ସ୍ୱର୍ଗେ ତାଙ୍କୁ ଚଢ଼ାଇ
କେତେବେଳେ ନର୍କେ ପକାନ୍ତି । ଆରେ ମନ । ୩ ।

ଯେପରେ ଗ୍ରାମାଧିପ   ଗ୍ରାମ ଉପରେ ଭୂପ
ପ୍ରଜାଙ୍କୁ ଦୁଃଖ ସୁଖ ଦ୍ୟନ୍ତି ।
ତେ ଯାଇଁ ଦ୍ୱାରନ୍ତରେ   ମିଳି ରାଜା ସମ୍ମୁଖେ
ନାନାବିଧ ଶବ୍ଦ ଆଚରନ୍ତି ରେ । ଅରେ ମନ ।
ସେ ଯେବେ ଦୈନ୍ୟ ତାଙ୍କୁ କହେ ।
ନୃପଙ୍କୁ ଅନୁସରଣହିଁ ।
ଜାଣି ସେ ଅଧିକାର   ଶତ୍ରୁଇ ଏ ପ୍ରକାର
ଦୁର୍ଗାଙ୍କୁ ଜଣାଇଥା ବୃଦ୍ଧ ରେ । ଅରେ ମନ । ୪ ।

ଶାସ୍ତ୍ରର ପତ୍ର ଭୁଲ   ନ ଲଭନ୍ତୁ କହନ୍ତି
ଯାହା କାଳ ବଶ ମାଡ଼ଇ ।
ଶୁଣେ ବୋଲନ୍ତି ସେତ   ତାଙ୍କୁ ଜଗତ ମାତ
ଛାଗ ମହିଁଷ ବଲି ଦେଇ ରେ । ଅରେ ମନ ।
ଜଗତରୁ ସେ କି ବାହାର ।
ସୃଷ୍ଟି କି ଭକ୍ଷଣ ମାତ୍ର ।
ତହିଁ କାହା ନାଅନ୍ତି   ତାହା ନ ସ୍ମରଣନ୍ତି
ଇଷ୍ଟପ୍ରସାଦେ ଏ ଅଦର ରେ । ଅରେ ମନ । ୫ ।

ସେ ଅବଶେଷ ଗନ୍ଧ   ଭକ୍ଷନ୍ତି ସେ ଦୁର୍ବୁଦ୍ଧି

ତାହାଙ୍କୁ ଅବଜ୍ଞା କେଲବା ।
ଅମ୍ବର ପ୍ରଭୃ ଦର    ନର୍ମାଲ୍ୟ ସେବା କର
ତାଙ୍କର ନାହିଁ ଅନ୍ତରବା ରେ । ଅରେ ମନ ।
କାମନା କରଇ ଧନ ଜନ ।
ତହିଁରେ ନରକେ ମଜ୍ଜନ ।
ତହୁଁ ନିବର୍ତ୍ତି ହୁଅ    ଜାଣି ଅ ମହାମାୟା
ପାଇବ ବ୍ରଜେନ୍ଦ୍ରନନ୍ଦନ ରେ । ଅରେ ମନ । ୨ ।
ଚନ୍ଦ୍ର ସୂର୍ଯ୍ୟ ସଦ୍ୱଜେ    ଇଶ୍ୱର ସନ୍ନିଧ ଥଷ
ନ କର ତୁ ଅବହେଳନ ।
ବ୍ରହ୍ମା ବିଷ୍ଣୁ ଶଙ୍କର    ପ୍ରଭୁ ଏ ବ୍ରହ୍ମାଣ୍ଡର
ଜନ୍ମ ପାଳନ ସଂହାରଣ ରେ । ଅରେ ମନ ।
ଏ ସର୍ବ କୃଷ୍ଣ ଅବତାର ।
ଜାଣି ତୁ କରନ୍ତୁ ଆଦର ।
ଶ୍ରେୟାଶ୍ରେୟ ହେତୁକୁ    ଜାଣ ଶାସ୍ତ୍ରକୁ
କର୍ତ୍ତବ୍ୟାକର୍ତ୍ତବ୍ୟ ବେଭାର ରେ । ଅରେ ମନ । ୭ ।

ତଥାହି—

ସତ୍ତ୍ୱଂ ରଜସ୍ତମ ଇତି ପ୍ରକୃତେର୍ଗୁଣାସ୍ତୈ
ର୍ଯୁକ୍ତଃ ପରଃ ପୁରୁଷ ଏକ ଇହାସ୍ୟ ଧତ୍ତେ ।
ସ୍ଥିତ୍ୟାଦୟେ ହରିବିରିଞ୍ଚିହରେତି ସଂଜ୍ଞା
ଶ୍ରେୟାଂସି ତତ୍ର ଖଲୁ ସତ୍ତ୍ୱତନୋର୍ନୃଣାଂ ସ୍ୟୁଃ । ୬୦ ।

ମହାବୈକୁଣ୍ଠେ ପୁଣ    ଯେ ଶ୍ରୀମନ୍ନାରାୟଣ
ସର୍ବଶକ୍ତି କୃଷ୍ଣ ସମାନ ।

ମାଜ ଶୃଙ୍ଗ ମାଧୁର୍ଯ୍ୟ          ନାହିଁ ସେ ଶୃଙ୍ଗଭୂକ
ସମସ୍ତ ଅବତାର ସ୍ଥାନ ରେ । ଅରେ ମନ ।
ଭାଗ୍ୟେ ଯେ ସେ ସ୍ଥାନ ମିଳଇ ।
ପୁନରାଗମନ ନୁହଇ ।
ଗୋଲୋକନାଥ ହତେ          ଥିଲେ ଗୋପୀସହିତେ
ରସ ନବ ନବ ନୁହଇ ରେ । ଅରେ ମନ । ୮ ।

ତଥାହି —

ସିଦ୍ଧାନ୍ତସ୍ତ୍ୱଭେଦେଽପି ଶ୍ରୀଶକୃଷ୍ଣସ୍ୱରୂପୟୋଃ ।
ରସେନୋତ୍କୃଷ୍ୟତେ କୃଷ୍ଣରୂପମେଷା ରସସ୍ଥିତିଃ ॥ ୪୬ ।

କହିଲେ ହେବ କସେ          ଯେ ବ୍ରଜବନ୍ଧୁ ରସେ
ବୁଡ଼ନ୍ତ ତାର କାହିଁ ଜ୍ଞାନ ଥିବ ।
ସେହି କୃଷ୍ଣ ବେଶରେ          ମଥୁରା ଦ୍ୱାରକାରେ
ବେଶ ସ୍ୱଭାବ ଧରେ ଆନ ରେ । ଅରେ ମନ ।
ଆମ୍ଭ ପ୍ରାଣନାଥ ସେ ନୋହି ।
ପୂର୍ବ ସ୍ମରଣ ଦୁଃଖ ସହି ।
ତ୍ରିଭଙ୍ଗି ନଟବର          ମୟୂରପୁଚ୍ଛ ଶେଖର
ଭିତରୁ ବାହାରିବ କେହି ରେ । ୯ ।
ସେ କଥା ରହୁକନା          ଯେବେ ଶ୍ରୀରାଧା ବନା
ଚନ୍ଦ୍ରାବଳ୍ୟାଦି ସଖୀ ସଙ୍ଗେ ।
ଉଛନ୍ତ ନବରଙ୍ଗୀ          କରଣ ନାନା ଭଙ୍ଗୀ
ଶୃଙ୍ଗିଲେ ବଂଶରେ ଅଙ୍ଗେ ରେ । ଅରେ ମନ ।
ଲଳିତାଦି ପାଶରେ ରହି ।

ତ୍ରିଯୁଗ୍ମା ପ୍ରସଙ୍ଗ କୁଢ଼ାକୋଢ଼ ।

ସେ କାଳେ ଥନ ଥନ        ଭୋଳା ଭ୍ରୂ ନର୍ତ୍ତନ

ସେ ଚେଷ୍ଟା ସ୍ୱମତ୍ରୂଥା ଭୁଦ୍ଧରେ । ଅରେମନ । ୧୦ ।

ଲୋଭ ହେଉଛୁ ଯାହା        ଅଜ୍ ଏଣିକି ତାହା

କହ ବୋଲି କୁହା ନ ଯାଇ ।

ପୂର୍ବ ଉତ୍ଥୁଳ ପଡ଼ି        ପଡ଼ିଲା ଏବେ ଗଳି

କାଳକ ଲୁଗ୍ଣ ଲୁଗ୍ଣ ରେ । ଅରେ ମନ ।

ତୁମ୍ଭମାନଙ୍କ ଅନୁଭବ ।

ଯାସୋଉ ଜାଣି ନ ପାରବ ।

ଏରୂପେ ବୋଲି ତାକୁ        ପ୍ରକାଶ କରିବାକୁ

ଭସନା କରୂପେ ଚଳବ ରେ । ଅରେମନ । ୧୧ ।

ମୁ କବାନ୍ତର୍ଯ୍ୟ ବ୍ରହ୍ମା        ଏବ୍ରଜର ମହିମା

ମହିମା କି କହିବ କେଉଁ ପ୍ରକାର ।

ବେଦବାଣ୍ଧ ଗୋଚର        ନ୍ତୁଞ୍ଜେ ଯେ ଧାରାଧାର

ପ୍ରବୃତ୍ତି ସୁଧା ସୁଧାକର ରେ । ଅରେ ମନ ।

ଚନ୍ଦ୍ରସ୍ମାନନ୍ଦ ଚିନ୍ତାମଣି ।

ଦୃଶ୍ୟାଦୃଶ୍ୟ ଯେ ସେହୁ ଜଣି ।

ଜୀବକୁ କୃପା କର        ସାକ୍ଷାତେ ବସୁଛନ୍ତି

ଏହି ସ୍ଥାନ ବୋଲିଣ ଜାଣି ରେ ଅରେ ମନ । ୧୨ ।



ଦଶମସ୍କନ୍ଧ ।

ରାଗ—ମଙ୍ଗଳ ।

ମହିମା ଶୁଣନେ ଭକ୍ତୁଥାଅ ଥୋକେ ।
ଈଶ୍ୱର ଗୁଣ କହୁ ଏବେ ଏକେ ।
ପୂତନା ଶକଟା ତୃଣା ବଧିଲେ ।
ପୁଣି ବକ ବୃଷଭ ଧେନୁକ ନାଶିଲେ ।
ଯମଳାର୍ଜ୍ଜୁନ ଭଞ୍ଜନ ସେ ଈଶ୍ୱର ।
ପୁଣି କାଳୀୟ ଗଞ୍ଜନ ଜନରଞ୍ଜନ । ୧ ।
ଗୋଲ କଣୁ ଗୃହେଁ ସୁବର୍ଣ୍ଣ କଲେ ।
ଅନ୍ଧକୁ ତୋ ପୁଅ ମାଇଲା ବୋଇଲେ ।
ଦେଖ କି ନା ବୋଲି ବୋଲନ୍ତେ ଗୃହୁଁ ।
ପୁଣି ସମସ୍ତ ଦୃଶ୍ୟ ଦେଖିଲା ତାକୁ ତହୁଁ ।
ଏତେ କରୁଣା ସାଗର । ସେ ଈଶ୍ୱର ।
ପୁଣି ଭକ୍ତଙ୍କେ ଭବାର୍ଣ୍ଣବରୁ ଉଦ୍ଧାର । ୨ ।
ଇନ୍ଦ୍ର ଯେ ବୃଷ୍ଟି କଲା ସାତଦିନ ।
ଟେକିଲେ ବାମକରେ ଗୋବର୍ଦ୍ଧନ ।
ଶରଣ ଆସି ପଶିଲା ଚରଣ ।
ପୁଣି କରୁଣା କଲେ ଶରଣରକ୍ଷଣ ।
ବ୍ରହ୍ମା କଲା ଅପରାଧ ସେ । ଈଶ୍ୱର ।
ପୁଣି ଦଣ୍ଡ କ୍ଷମା କରି କଲେ ପ୍ରସାଦ । ୩ ।
ଅଶେଷ ମହିମା ଅଟେ ଈଶ୍ୱର ।

ମଥୁରା ଯାଇ ଦ୍ୱାରକାରେ ଘର ।
ସେଠାରେ ଲୀଳା କଲେ ଯାହା ଯାହା ।
ପୁଣି କେ ଶେଷମୁଖେ ଶେଷ କରିବ ତାହା ।
ମହର୍ଷୀମାନଙ୍କ ବନ୍ଧୁ ସେ ଈଶ୍ୱର ।
ପୁଣି ଅନ୍ୟୋନ୍ୟରେ ସେ ସମସ୍ତ ଶୋଭା । ୪ ।

କେବେ ଗରୁଡେ ନନ୍ଦଘୋଷରଥ ।
ଅଭେଦ ସମଧ୍ୟାନରୁପେ ପଥେ ।
ରଥୀ ପାଦାତି ବାଜୀଗଜ ଯେତେ ।
ପୁଣି କେ ଗଣନା କରି ପାରିବ କେବେ ।
ପାଣ୍ଡବଙ୍କ ପକ୍ଷପାତ ସେ ଈଶ୍ୱର ।
ପୁଣ ଦେଖ ଦୟାଳୁଗୁଣ କେମନ୍ତ । ୫ ।

ଏ ମହିମାମାନ କହନ୍ତେ ଜନ ।
ହୃଦ ମାଡ଼ଇ ମୁଁ ହୋଇ ମଉନ ।
ତାହା ନିଶ୍ଚୟ ହୋଇଲେ କେବଳ ।
ପୁଣ ବ୍ରହ୍ମା ବିଷ୍ଣୁ ରୁଦ୍ର ପ୍ରତ୍ୟେକେ ପ୍ରିଢ ।
କୋଟି କୋଟି ବ୍ରହ୍ମାଣ୍ଡହିଁ ସେ ଈଶ୍ୱର ।
ପୁଣି ଜନ୍ମି ଏକେକ ରୋମକୂପେ ରହି । ୬ ।
ପାଞ୍ଚଶକୋଟି ଯୋଜନ ବହଳ ।
ସୁବର୍ଣ୍ଣଡିମ୍ବ ବ୍ରହ୍ମାଣ୍ଡ ସକଳ ।
ସେ ଶ୍ୱାସ ଗର୍ଭଗତେ ତାଙ୍କ ନାଶ ।
ପୁଣି ତେତେ ଜାତ ହତ ସଦା ଅଶେଷ ।

ଏଣେ ମହାବିଷ୍ଣୁ ସେହୁ ଯେ । ଈଶ୍ୱର ।
ପୁଣି ଏ କୃଷ୍ଣର କଳା ଅଟନ୍ତି ସେହୁ । ୭ ।

ତଥାହି ।—

ଯସ୍ୟୈକନିଃଶ୍ୱସିତକାଳମଥାବଲମ୍ବ୍ୟ
ଜୀବନ୍ତି ଲୋମବିଲଜାଜଗଦଣ୍ଡନାଥାଃ ।
ବିଷ୍ଣୁର୍ମହାନ୍ ସ ଇହ ଯସ୍ୟ କଳାବିଶେଷୋ
ଗୋବିନ୍ଦମାଦିପୁରୁଷଂ ତମହଂ ଭଜାମି ।

ଏ ମହିମା ଅନନ୍ତରେ ପ୍ରକାଶ ।
ଶ୍ରୀରାଧା ସ୍ୱରୂପ ନ ଦେଖାନ୍ତି ଲେଶ ।
ଲୁଚକାଳି ଖେଳେ ଲୁଚନ୍ତେ ଯାଇ ।
ପୁଣି ଜେ ଦେଖନ୍ତେ ଚତୁର୍ଭୁଜ ହୋଇ ।
ସେ କହନ୍ତି ଧାଇଁ ଗଲି ସେ । ଈଶ୍ୱର ।
ପୁଣି ସେ କୃଷ୍ଣଙ୍କୁ ଉରେ ଯୋଡ଼ ହାତ ହୁଇ ।। ୮ ।
ଯେବେ ସେ ଚିଦ ଶକ୍ତି ଅଙ୍ଗୀକାର ।
ମନେ ପ୍ରକାଶ ହୁଏ ମୁଁ ଈଶ୍ୱର ।
ତେବେ ସମସ୍ତ ହୁଏ ଇଚ୍ଛା ମାତ୍ର ।
ପୁଣି ରସାର୍ଥେ ସେ ଅଙ୍ଗୀ କରି ଜୀବନ୍ତୁ ।
ମୁଁ ନନ୍ଦସୁତ ନାଗର ଏ । ବିଗ୍ରହ ।
ପୁଣି ଗୃହିଣୀ ରକ୍ଷୁଣୀଙ୍କ ଚତୁର୍ଗ୍ରହ । ୯ ।
ଏହି ମହିମା ଲଗେ ମୋର ମନ ।
କର୍ଣ୍ଣୋତ୍ସବ ହେଲେ ଦୁର୍ଜ୍ଜୟମାନ ।
ନାନା କପଟବେଶ ଧରି ହରି ।

ପୁଣି ତାହା ଛପାନ୍ତି ଉପାପୁ ଅଚଳ ।
ଧନ୍ୟ ବୋଲିବା ତାହାଙ୍କୁ ସେ । ବନ୍ଧୁର ।
ପୁଣି ଉଲଟ ଗୃହଁ ଶୁଣନ୍ତି ବେଳକୁ । ୧୦ ।
ଅଳଙ୍କ ନାନା ବଧାନେ ତନ୍ତ ।
ଭୂଲଦେଶରେ ଶୋଭି କେଉଁ ଧନ ।
ଓଷ୍ଠେ ଅଞ୍ଜନ ଗଣ୍ଡେ ପାନବୋଳ ।
ପୁଣି ଘଣି ପଦ-ହାତେ ଦୃଶ୍ରିତ ଡ଼ୋଳ ।
ମନେ ହସି ଗୃହେଁ ବାର ସେ । ବଗୁର ।
ପୁଣି ଶୁଣେ ଗୀଥା ବୁଢ଼ ବ୍ରୀଡ଼ାପାଗର । ୧୧ ।
ଏହ ମହିମା ଶୁଣିବାରୁ କର୍ଣ୍ଣ ।
ଆଉ ପ୍ରସଙ୍ଗ ନ ଅଦରେ ମନ ।
ନୂଆ ଗୃହାଣି ନୂଅନୂଆ ବେଶ ।
ପୁଣି ନୂଆ ଗୃତୁସି ନୂଆ ନୂଆ ହାସ ।
ନୂଆ ଇଙ୍ଗିତ ବଚନ ସେ । ବଗୁବ ।
ପୁଣି ଶୋଚ୍ଚବ୍ୟ ଦ୍ରଷ୍ଟବ୍ୟ ଯାର ସେ ଧନ୍ୟ । ୧୨ ।
ଏ ମହିମା ଅନୁଭଗ୍ୟ ଯେ ଭକ୍ତ ।
ମୋଠାରେ ହୁଅନ୍ତେ କ ଭୃପାଯୁକ୍ତ ।
ଏମନ୍ତ କରଣୀ କଠାନ୍ତି ନିତ୍ତ ।
ପୁଣି ଧନୁର୍ବିଦ୍ୟା ଗୁଣ ନେବେ ରଖନ୍ତି ।
ସର୍ବମୋହନ ମୋହତ ସେ । ବଗୁର ।
ପୁଣି କନ୍ଦର୍ପ ବ୍ରହ୍ମା କରନ୍ତା ସତ । ୧୩ ।

---

## ଏକାଦଶ ଛାନ୍ଦ ।

ବସନ୍ତ ।—ଭଗବତବାଣୀ ।

ଶୁଣ ହେ ବ୍ରଜ ଉପାସକେ ।
ଅଭିଳାଷ କର ଯେବା କେ ।୧।
ବର୍ତ୍ତିବ ଏକା ବ୍ରଜରେ ।
ଶୃଙ୍ଗାର ରସ କ ପ୍ରକାରେ ।୨।
ସଂସାରରେତ ସେହି ଆକାର ।
ବୈକୁଣ୍ଠେ ଯୁଗଳ ବିହାର ।୩।
ଦ୍ୱାରକାରେ ସହସ୍ର କୋଟି ।
ମହିଷୀ ସଙ୍ଗେ ବିହରନ୍ତି ।୪।
ପାର୍ବତୀ ଶିବ ସହିତରେ ।
ମହାନନ୍ଦ କୈଳାସେ କରେ ।୫।
ଅଯୋଧ୍ୟାରେ ସୀତା ରାମର ।
କେହୁ କହୁ ବ୍ରଜେ ଶୃଙ୍ଗାର ।୬।
ତୁମ୍ଭଙ୍କୁ ତା ବୁଝାଇ କହି ।
ଗୋରସ ସ୍ୱାଦୁ ସଙ୍ଗେ କହୁ ।୭।
ଅଗ୍ନିରେ ସ୍ନିଗ୍ଧ ସେ ଅଧମ ।
ସେ ସ୍ୱାଦୁ ଉତ୍ତମୁ ଉତ୍ତମ ।୮।
ଗୋପୀ କୃଷ୍ଣ ମଧ୍ୟରେ ରସ ।
ପାଇ ବିରହାନଳ ତ୍ରାସ ।୯।
ହେଉଥାଇ ନାନା ପ୍ରକାର ।
ପଶ୍ଚାତେ ମିଷ୍ଟତା ଅପାର ।୧୦।

ଅଜ୍ ଯୁଗଳ ମଧ୍ୟେ ରସ ।
ଢେଲେଙ୍କେ ଅଗ୍ନି ଗୁପ୍ତା ଅଶ । ୧୧ ।
ଅଜ ସ୍ଥାନେ ଯେତେ ଯୁଗଳ ।
ତହିଁରେ ସମ୍ଭୋଗ କେବଳ । ୧୨ ।
ଦକ୍ଷିଣା ଅଟନ୍ତି ସମସ୍ତେ ।
ବାମ୍ୟତା ନୋହୁ କାମଗ୍ରସ୍ତେ । ୧୩ ।
ନାରୀଙ୍କର ଯେ ନିବାରଣ ।
ରଣରଣ ପରମ ବାଣ । ୧୪ ।
ସ୍ନେହ ସ୍ୱର୍ଣ୍ଣ ନିର୍ମଳ କର ।
ବାନ ବଡାଇ ଏ ଗୃହସ୍ଥ । ୧୫ ।
ଏରୂପ ଭଙ୍ଗି ଏହୁ ଛବି ।
କାହୁଁ ଲଭିବେ ଦେବ ଦେଶ । ୧୬ ।
ଲକ୍ଷ୍ମୀ ନାରାୟଣ ଏ ଦୁଇ ।
ଗୃହ ଗୃହ ଭୂଜ ଅଟଇ । ୧୭ ।
ଦୁଇଙ୍କ ଶିରେ ଉର୍ଦ୍ଧ୍ୱ ଚୂଳ ।
ପ୍ରତକ୍ଷଣେ ରମଣୀ କୋଳ । ୧୮ ।
ଦଶଭୁଜ ପଞ୍ଚବଦନ ।
ଯୋଗୀ ବେଶ ସେ ବିଲୋଚନ । ୧୯ ।
ପାଙ୍କଗ ଅଟେ ଯେ ସୁନ୍ଦର ।
ଉର୍ଦ୍ଧ୍ୱେ ଜଟା ମୁକୁଟ ଶିର । ୨୦ ।
ବ୍ରହ୍ମ ମାନଙ୍କ ନରକୁଣ୍ଡ ।
ତାଙ୍କର ଏକଇ ଯୁବତୀ । ୨୧ ।

ଅଷ୍ଟନାୟିକା ଉପମାନ ।
ସେଠାରେ କାହ୍ନୁ ଉପାର୍ଜ୍ଜନ । ୨୨ ।
ଦ୍ୱାରକାରେ ଯେ ବାସୁଦେବ ।
ମହଷୀ ପ୍ରୀତି ଅନୁଭବ । ୨୩ ।
ବୋଧ ନୋହିଲା ତହିଁ ମନ ।
ରଚଣ ନବ ବୃନ୍ଦାବନ । ୨୪ ।
ତହିଁ କ ଯାଇ ଏକାନ୍ତରେ ।
ରୋଦନ କରନ୍ତ କାତରେ । ୨୫ ।
ହା ହା ରେ ଦିବ୍ୟ ବୃନ୍ଦାବନ ।
ହା ହା ରେ କଶୋରରଞ୍ଜନ । ୨୬ ।
ହା ହା ରାଧିକା ପ୍ରାଣାଧିକା ।
କେହି ବଞ୍ଚିବ ଏବେ ଏକା । ୨୭ ।
ସତ୍ୟଭାମା ସେ ମଧ୍ୟେ ପ୍ରିୟ ।
ଫେଡଣ ମନରୁ ସଂଶୟ । ୨୮ ।
ପିଠାଇ କହିଲେ ତା ଅଗ ।
ଗୋପୀ ପୀରତି ଅନୁଭବ । ୨୯ ।
ତାଙ୍କ ସୌଭାଗ୍ୟଗର୍ବ ଜାଣି ।
ବ୍ରଜ ପ୍ରସଙ୍ଗେ ଯାଇ ନେଣି । ୩୦ ।
ରୁକ୍ମିଣୀ ଆଦି ଜାଣି ସର୍ବେ ।
କୃଷ୍ଣଙ୍କୁ ବୋଧିଲେ ଏଭାବେ । ୩୧ ।
ପରସ୍ତ୍ରୀ ସଙ୍ଗେ ବନ ଯାଇ ।
ଏଣୁ ସ୍ୱନାଶ ତ ରୁଚଇ । ୩୨ ।

ଛାଡ଼ି ନ ପାରଲେ ଅଭ୍ୟାସ ।
ଅମ୍ଭେ ଚହାଇବୁଁ ସେହି ଯଶ । ୩୩ ।
ନବବୃନ୍ଦାବନକୁ ଯାଇ ।
ଲୁଚିଣଥିବ ତୁମ୍ଭେ ତହିଁ । ୩୪ ।
ବଂଶୀ ବଜାଇବ ନିର୍ଜ୍ଜନେ ।
ଅମ୍ଭେମାନେ ଯିବୁଁ ଶେଷକେ । ୩୫ ।
ହୋଇବା ମିଳାମିଳି ତହିଁ ।
ତୁମ୍ଭର ମନ ବୋଧ ଯହିଁ । ୩୬ ।
କୃଷ୍ଣ ବସ୍ତୁଭଲେ ମନରେ ।
ନର୍ତ୍ତକ ନୃତ୍ୟ ବନ୍ଧାକାରେ । ୩୭ ।
ମନବୋଧିବା ଅସ୍ୱାଦଣ ।
କେତେ କୁଶଳ ହୁଏ ପ୍ରାଣ । ୩୮ ।
ସେ ରୂପେ ସେ ସ୍ଥାନେ ମିଳିଲେ ।
ଉଚ୍ଚେ ମୁରଲୀ ଧ୍ୱନି କଲେ । ୩୯ ।
ଲୁଚି ବାହାରନ୍ତେ ଏମାନେ ।
ବସ୍ତ୍ର ପଡ଼ିଲା ସ୍ଥାନେ ସ୍ଥାନେ । ୪୦ ।
କେ ଲୁଚି ହୋଇଛନ୍ତି ବାହାର ।
ଅଗେ ଦେଖେ ଅପେ ଈଶୁର । ୪୧ ।
ତୁମର ହାବୋଡେ କେ ପଡ଼ି ।
ବନ୍ଧାଇ ଅଇଲା ବାହୁଡ଼ି । ୪୨ ।
ଘିଅ ଭଣଜା ସ୍ୱତ ନାଶ ।
ଦେଖି ବାହୁଡ଼ିଲେ ଯୁବତୀ । ୪୩ ।

ସମସ୍ତ ସଙ୍ଗି କୃଷ୍ଣ ତହିଁ ।
ମୁରଲୀ ବଜାଇ ବଜାଇ । ୪୪ ।
ସ୍ୱେଦନ କରି ନିବର୍ତ୍ତିଲେ ।
ହା ବ୍ରଜ ହା ବ୍ରଜ ବୋଇଲେ । ୪୫ ।
ଚପାଳେ ମାରଣ ଶ୍ରୀକର ।
ଦୁଃଖେ ମେଲିଲେ ନିଜ ପୁର । ୪୬ ।
ଏରୂପେ ତହିଁ ବ୍ରଜବାଣି ।
ତାଙ୍କ ରସେ ତାହାଙ୍କୁ ତୋଷି । ୪୭ ।
ଆକୁତ କନ୍ଦର୍ପ ପୀଡାରେ ।
ସମ୍ଭୋଗେ ବନ୍ଧୁ ପୂର୍ଣ୍ଣ ହେଲେ । ୪୮ ।
ବ୍ରଜେ ତା ଅଧିକାର ନାହିଁ ।
ଚିନ୍ମୟ ଅନଙ୍ଗ ସେ ତହିଁ । ୪୯ ।
ପ୍ରାକୃତ ନର ସର୍ବ୍ବର ।
ସେ କାହିଁ ପାଇବେ ଗୋଚର । ୫୦ ।
ଯହିଁ ପ୍ରତ୍ୟଙ୍ଗ ଜନେ ଜଣେ ।
ସହାୟ କୁଅନ୍ତି ଲକ୍ଷଣେ । ୫୧ ।
ନୟନ ଦୂତପଣ କରେ ।
ନାନାଦି ଚେଷ୍ଟାଙ୍କୁ ଆଚରେ । ୫୨ ।
କୁଞ୍ଚିତ ସ୍ତବକ ମୁଦ୍ରିତ ।
ପ୍ରସାର ଚକିତ ଘୂର୍ଣ୍ଣିତ । ୫୩ ।
କେତେବେଳେ ବଙ୍କେ ଚଳନ ।
ଲଲାଟପଟେ ବା ମିଳନ । ୫୪ ।

ସଙ୍କେତସ୍ଥାନମାନଙ୍କୁହିଁ ।
କେହୁ ନ ଯାଉ ଅଗେ ଯାଇ ୫୫ ।
ଦୃଷ୍ଟାନ୍ତର କଥା ବୁଝାଇ ।
ଅବା ଉପସ୍ଥାର କରଇ । ୫୬ ।
ଯାହାର ତାକୁ ଦୈନ୍ୟେ ନେଇ ।
ପାଦପଙ୍କଜେ ପ୍ରଣମାଇ । ୫୭ ।
ଅଣ ଯେହ୍ନେ ପ୍ରିୟଜନରେ ।
ମିଳାଇ ଅଙ୍ଗ ସଙ୍ଗତରେ । ୫୮ ।
ନାସିକା ଫୁଲ୍ଲ ଉଠୁଥାଇ ।
ଗାମ୍ଭୀର୍ଯ୍ୟ ଜଳ ପ୍ରାପ୍ତ ହୋଇ । ୫୯ ।
ଭ୍ରୂଲତା ଥାଇ ତାର ସଙ୍ଗେ ।
ଅନଙ୍ଗେ ନାଚେ ନବରଙ୍ଗେ । ୬୦ ।
ଅନୁରାଗ ଚେଷ୍ଟା ପ୍ରସଙ୍ଗେ ।
ଶ୍ରବଣ ଝୁଲେ ଚିର ସଙ୍ଗେ । ୬୧ ।
ଓଷ୍ଠର ଏହୁ ଉପାସନ ।
ହା ହା ମନ୍ତ୍ର ସଦା ପଠନ । ୬୨ ।
ଚମକ ଉଠୁଥାଇ ହୃଦ ।
ପରଦୁଃଖେ ପାଇ ବିଷାଦ । ୬୩ ।
କରକଞ୍ଜ କୁଟ୍ମଳ ପର ।
ହେଉଥାଇ କେତେ ଶୃଙ୍ଗର । ୬୪ ।
ପାଦାଙ୍ଗୁଷ୍ଠି ଲେଖନକାର ।
କ୍ଷଣେ କାଟୁଥାନ୍ତି ଗାର । ୬୫ ।

ଏ ଅପୂର୍ବ ଚେଷ୍ଟାମାନ ।
କେହୁ ମିଳବ ଅନ୍ୟସ୍ଥାନ । ୬୬ ।
ସେ ଅନୁରକ୍ତ ବନା ଆନ ।
ବୁଝେଁ କେବ୍ର କବେଣ ଭେଦ । ୬୭ ।
ସ୍ଥଳକମଳ କେବେ କାହିଁ ।
ଶିଖିଚନ୍ଦ୍ରକ ଲୋଟୁଥାଇ । ୬୮ ।
ସ୍ବର୍ଣ୍ଣ ଝଳନଳନ୍ତ ଝର ।
ମୃଣାଳେ ବନ୍ଧା ବନ୍ଦୀସାର । ୬୯ ।
ସ୍ବର୍ଣ୍ଣ ହର ସଙ୍ଗରେ ହର ।
ଘୃତୀଭ ଯେସ୍ନେ ଷୀରବାର । ୭୦ ।
ଘନ ଯେବେ ଶୋଭି ରହଇ
ବିଜୁଳି ଚହଟି ଉଠଇ । ୭୧ ।
ପଙ୍କଜ ପାଇଣ ଭ୍ରମର ।
କରେ ନାନା ବିଧାନେ ସ୍ବର । ୭୨ ।
କାହା ଭୂଲେ ଉନବିଂଶତି ।
ପ୍ରକାର ଯାବକ ଅଙ୍କୁଡ । ୭୩ ।
ନାଗବଲ୍ଲୀ ରସ କପାଳେ ।
ଗଣ୍ଡେ କାହାର ଥାଇ ଦେଲେ । ୭୪ ।
ଅନେକ ଭଙ୍ଗ ଚନ୍ଦ୍ର ଗୃହିଁ ।
ବହୁଚକୋର ସୁଖ ପାଇ । ୭୫ ।
ପରବାସେ ଅଦର କର ।
ବୋଲେ କେତେ କୋକିଳ ସ୍ବର । ୭୬ ।

ମୋ ବକ୍ଷ ଏମନ୍ତ ହୋଇବ ।
ଏ ବାଣୀ ସଙ୍କେ କି ମିଶିବ । ୭୭ ।
ଏଥି କାର୍ଯ୍ୟକୁ ଅଣା କର ।
ସାଧୁଚରଣ ଦାସ ପୁର ୭୮ ।
ନାସ୍ତାନ୍ଧଳମଣି ଏ ଗୀତ ।
ଉପନାସ୍ତା ଏଥି କଥିଛ । ୭୯ ।
ଏ ଏକାଦଶ ଛାନ୍ଦ ଶେଷ ।
ଗଣନାସ୍ତାକୁ ବଳେ ଅଣ । ୮୦ ।



ଦ୍ୱାଦଶ ଛାନ୍ଦ ।

ଗଣନାସ୍ତା ରାଗ—କାନଡ଼ା ।

କୃଷ୍ଣ ପ୍ରିୟାଗଣ ଏ ତିନି ପ୍ରକାର ଗୋପୀ ମହିଷୀ ଲକ୍ଷ୍ମୀଗଣ ।
ଦେବକନ୍ୟା ବେଦକନ୍ୟା ଏ ଜାଣ ।
ମୁନିକନ୍ୟା ମିଶି ସାଧନ ସେବା ଏ
ସେବ ହୋଇଲେ ସାଧ୍ୱଣ ହେ । ମାନସ ।
ଗୋପୀକନ୍ୟା ନିତ୍ୟସେବା ପ୍ରମାଣ ।
ସଖୀ ସଖୀ ଅପେ କୃଷ୍ଣ ହୋଇଣ ।
ପ୍ରକଟାପ୍ରକଟେ ବ୍ରଜେ ଲୀଳା କରେ
ଏ ବେଦବାକ୍ୟ ପ୍ରମାଣ ହେ । ୧ ।

ଭକ୍ତ ଶିରୋମଣି      ଗୋପୀ କୃଷ୍ଣବାଣୀ
ମୋ ମାୟାରେ ସର୍ବେ ମୋହିତ ।
ଗୋପୀ ମାୟାରେ ଗ୍ରସ୍ତ ମୋର ଚିତ୍ତ ।
ଯାଙ୍କ ପ୍ରେମ ଋଣି      ନ ପାରି ଅପଣେ
ହୋଇଲେ ତାଙ୍କୁ ବିକ୍ରୀତ ହେ । ମାନସ ।
ତହିଁ ଶ୍ରେଷ୍ଠ ଯେ ଅଷ୍ଟ ଯୂଥେଶ୍ୱରୀ ।
ଚନ୍ଦ୍ରାବଳୀ ଶ୍ରୀରାଧା ସର୍ବୋପରି ।
ଏ ମଧ୍ୟେ ରାଧିକା      କୃଷ୍ଣପ୍ରାଣାଧିକା
ଯା ପ୍ରେମେ ବନ୍ଧନ ହରି ହେ । ୨ ।

ଉମା ରମା ରତି      ଶଚୀ ସରସ୍ୱତୀ
ସାବିତ୍ରୀ ଅହଲ୍ୟାରୁନ୍ଧତୀ ।
କୋଟି ଅଂଶେ ଯେ ସମାନ ନୁହନ୍ତି ।
ସୌନ୍ଦର୍ଯ୍ୟ ମାଧୁର୍ଯ୍ୟ      ସୌଭାଗ୍ୟ ଗାମ୍ଭୀର୍ଯ୍ୟ
ସଦ୍ଗୁଣ ଯା ଅଙ୍ଗେ ସ୍ଥିତି ହେ । ମାନସ ।
ଯାହା ନେହାନ୍ତ ପାତ ଇଚ୍ଛା କରି ।
ଚତୁର୍ଦ୍ଦିଗେ ଭ୍ରମଣ କରେ ହରି ।
ଯା ବିରହଜ୍ୱରେ      ଅବନୀ ଲୋଟନ୍ତି
ଫର୍ଚ୍ଚରୁ ଦେହ ଭରି ହେ । ୩ ।
କୃଷ୍ଣ ବିରହରେ      ସ୍ଥାନାସ୍ଥାନ
ନାହିଁ ଲୁଅନ୍ତି ରାଧା ଅଚେତନ ।
ସଦାନୁଭାବେ ସାତ୍ତ୍ୱିକରେ ପୂର୍ଣ୍ଣ ।
ମହାଭାବ ଦଶା      ଲଭନ୍ତି ଜୀବନ

ହୋଇଥାଇ କାହିଁ ଲୀନ ହେ । ମାନସ ।
ଦେଖି ଲଳିତାଦି ଯେହୁ ସ୍ୱରୂପେ ।
ହେଲେ ଧର୍ମ ସମସ୍ତ ଅନୁରୂପେ ।
ତହୁଁ ନବର୍ତ୍ତିଭ ବ୍ୟାଜେ ଗାଲ ଦେଇ
ବୋଧନ୍ତି କପଟ କୋପେ ହେ । ୪ ।
ମାନ କଲେ ରାଧା । କୃଷ୍ଣପ୍ରାଣ ଅଧା
ପଡ଼ି କହେ ଧରି ଚରଣ ।
ମନ୍ଦ ରଣ ବନ୍ଧୁ ମୋର ଶରଣ ।
ସେ ଖଣ୍ଡଣ ରୂଷା ହସି କହୁ ଭାଷା
ଉଠେ ଅନନ୍ଦ ହୋଇଣ ହେ । ମାନସ ।
କୁଞ୍ଜେ ସମ୍ଭୋଗ ଚର୍ଚ୍ଚିତ ନୟାନ୍ତି ।
ତୁଏ ପାସୋର ନାଗ୍ରି ପୁଂସ ମନ୍ତ୍ର ।
ଯେ ଅଘର ଉକ୍ତି ଅଧେ ଅଧେ ଶ୍ୟାଛ
ଅର୍ବେକ କଣ୍ଠେ ରଖନ୍ତି ହେ । ୫ ।
ସେହୁ ରାଧିକାର ସୁରଙ୍ଗ ପଯୃର
ଅଶ୍ରୁସ୍ତୃ ଅଟଇ ମୋହର ।
ସେ ସେବାକୁ ଯୋଗ୍ୟ କାହିଁ ମୁଁ ଛର ।
ଶ୍ରୀଗୁରୁ ଅଙ୍କରେ ଲୋଭତ କନ୍ତୁଭ୍ର
ଅସ୍ପୃତ୍ତ କାହିଁ ଜୀବର ହେ । ମାନସ ।
ତାଙ୍କ ସଖୀଗଣ ପାଞ୍ଚ ପ୍ରକାର ।
କହିବାକୁ ସମସ୍ତ ନାହିଁ ମୋର
ତହିଁ ପ୍ରିୟସଖୀ ମଧ୍ୟେ କନିଷ୍ଠ ଯେ
ସେ ସଙ୍ଗ ଉପାସ୍ୟକର ହେ । ୬ ।

ଦାସୀବାନ୍ଧ୍ଳୀ ସେ ଲକ୍ଷଣାବାଳଶ୍ରୀ
କୃପାକରବେ ଯାହାଠାରେ ।
ଜାଣ କୃଷ୍ଣ ଅଛନ୍ତି ତା ମୁଠାରେ ।
କଉତୁକେ ତାଙ୍କ ସଙ୍ଗରେ ମିଳାନ୍ତି
ନାଥଙ୍କୁ ଯେ ହେଜଠାରେ ହେ । ମାନସ ।
ତଥା ଇତି ବୋଲ ଯେଉଁ ବଚନ ।
ପୃଚ୍ଛ ହସ୍ତଗତ ଅହ୍ଲ ଯେମନ ।
ସେହିମଣି ଫଣା ଟେକ ଫେର [illegible]
ସେରୂପେ ନନ୍ଦନନ୍ଦନ ହେ । ୭ ।
ଏ ଲଗ୍ୟ କାହାର ଭବେ ଶ୍ରୀରାଧିକ-
ସେବାରେ ନିଯୁକ୍ତ ହୋଇବ ।
ରୂପମଞ୍ଜରୀ ଦେ ଅନୁଗ୍ରହ ହେବ ।
ଦୁର୍ଣାଳିଗଣ ଛଳରେ ଗୁରୁରୂପା
ଥାଜ୍ଞା କାର୍ଯ୍ୟ କରିଥିବ ହେ । ମାନସ ।
ନଷ୍ଟା ପ୍ରତ୍ୟେକେ କହ ବାରବାର ।
ବାର ଛନ୍ଦରେ ସମ୍ପୂର୍ଣ୍ଣ ହେବାର ।
ଭଣେ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା
ହର ହର ଧ୍ୱନି କର ହେ । ୮ ।

ସମାପ୍ତ ।

---

The Union Printing Works, Cuttack,